# ଜାତକ-ଚନ୍ଦ୍ରିକା ।

## ଶ୍ରୀ ଗଣେଶାୟ ନମଃ ।

ଯଚ୍ଛାସ୍ତ୍ରଂ ସବିତା ଚକାର ବିପୁଳଂ ସ୍କନ୍ଧୈସ୍ତ୍ରିଭିର୍ଜ୍ୟୋତିଷଂ
ତସ୍ୟୋଚ୍ଛିତ୍ତି ଭୟାତ୍ପୁନଃ କଳିଯୁଗେ ସଂସୃତ୍ୟ ଯୋ ଭୂତଳଂ ।
ଭୂୟଃ ସ୍ୱଳ୍ପତରଂ ବରାହମିହିରୋ ବ୍ୟାଖ୍ୟାଂ ତୁ ସର୍ବାବଧା-
ଦିତ୍ୟଂ ଯତ୍ପ୍ରବଦନ୍ତି ଯୋଗକୁଶଳା ସ୍ତସ୍ମୈ ନମୋ ଭାସ୍ୱତେ ॥୧॥

ଯେଉଁ ଶାସ୍ତ୍ରକୁ ସୂର୍ଯ୍ୟଦେବ ତିନିସ୍କନ୍ଧରେ ବିଭକ୍ତ କରି ଜ୍ୟୋତିଃ-ଶାସ୍ତ୍ର ନାମକ ଗ୍ରନ୍ଥ ପ୍ରକାଶ କରିଥିଲେ ଏହାକୁ କଳିଯୁଗରେ ବରାହ-ମିହିରାଚାର୍ଯ୍ୟ ବ୍ୟାଖ୍ୟା କରିଥିଲେ ସେହି ବ୍ୟାଖ୍ୟାନୁଯାୟୀ ବର୍ତ୍ତମାନ ଫଳିତ ଗ୍ରନ୍ଥ ପ୍ରଭୃତି ପ୍ରଚଳିତ ହୋଇଅଛି । କିନ୍ତୁ ସେହି ସୂର୍ଯ୍ୟଦେବଙ୍କୁ ନମସ୍କାର କରି ଏହି କ୍ଷୁଦ୍ରଗ୍ରନ୍ଥ ପ୍ରକାଶ କଲି । ୧ ।

ବିଫଳାନ୍ୟନ୍ୟଶାସ୍ତ୍ରାଣି ବିବାଦସ୍ତେଷୁ କେବଳଂ ।
ସଫଳଂ ଜ୍ୟୋତିଷଂ ଶାସ୍ତ୍ରଂ ଚନ୍ଦ୍ରାର୍କୌ ଯତ୍ର ସାକ୍ଷିଣୌ ; ୨ ।

ଅନ୍ୟାନ୍ୟ ଶାସ୍ତ୍ରମାନ ବିବାଦରେ ଫଳଦର୍ଶିତ ହୋଇ ନ ପାରେ ମାତ୍ର ଜ୍ୟୋତିଷ ଶାସ୍ତ୍ର ବିବାଦରେ ଚନ୍ଦ୍ର ଓ ସୂର୍ଯ୍ୟଙ୍କ ଦ୍ୱାରା ଅର୍ଥାତ୍ ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗ ନିଦର୍ଶନମାନଙ୍କ ଯୋଗୁଁ ଏହାଙ୍କ ସାକ୍ଷୀ ସ୍ୱରୂପ ଥିବାରୁ ଏହି ଜ୍ୟୋତିଷ ଗ୍ରନ୍ଥ ସଫଳ ହୋଇଅଛି । ୨ ।

ତତଃ ପ୍ରଭୃତି ଜନ୍ତୂନାଂ ସଦସତ୍କର୍ମସୂଚକଃ ।
ହୋରାଖ୍ୟୋ ବର୍ତ୍ତିତେ କାଲୋହ୍ୟହୋ ରାତ୍ରେର୍ବିକଳ୍ପତଃ ।୩।

ସଂସାର ମଧ୍ୟରେ ଜନ୍ତୁମାନଙ୍କର ସତ୍ ଓ ଅସତ୍ କର୍ମମାନ ଜାଣିବା ନିମନ୍ତେ ବରାହମିହିରାଦି ଜ୍ୟୋତିର୍ବିଦମାନେ ହୋରାନାମକ ଶାସ୍ତ୍ର ଉଦ୍ଭା-ବନ କଲେ ଯେ ଅହୋରାତ୍ର ଶବ୍ଦରୁ ଅନ୍ତ ଲୋପ କରିବାରୁ ହୋରା ନାମକ ଶାସ୍ତ୍ର ହେଲା । ୩ ।

ମେଷ ବୃଷ ମିଥୁନ କର୍କଟ ସିଂହାଃ କନ୍ୟାତୁଲାଥ ବୃଶ୍ଚିକଶ୍ଚ ।
ଧନୁରଥ ମକର କୁମ୍ଭୌ ମୀନ ଇତି ରାଶୟଃ କଥିତାଃ । ୪ ।
ଅଶ୍ୱି ଦମଦହନକମଳଜଃ ଶଶି ଶୂଳ ଭୃଦ୍ଦିତା ଜୀବଫଣିପିତରଃ
ଯୋନ୍ୟର୍ଯ୍ୟମାଦିନକୃତ୍ ତ୍ୱଷ୍ଟ୍ରୁ ପବନ ଶକ୍ରାଗ୍ନି ମିତ୍ରଶ୍ଚ ।
ଶକ୍ରୋନିଋତିସ୍ତୋୟଂ ବିଶ୍ୱେବିରଞ୍ଚିହରିବସୁ ବରୁଣଃ ।
ଅଜପାଦୋହି ବୁଧ୍ନ ପୌଷ୍ଣା ଚ ତେ ସ୍ୱଭାବନା । ୫ ।
ସପ୍ତାବିଂଶତିଭିର୍ଜ୍ୟୋତିଶ୍ଚକ୍ରଂ ସ୍ତିମିତ ବାୟୁଗଂ ।
ତଦର୍କାଂଶେ ଭବେଦ୍ରାଶି ର୍ନବର୍କ୍ଷ ଚରଣାଙ୍କିତଃ । ୬ ।

ସତେଇଶ ନ ୨୭ କ୍ଷତ୍ର ଜ୍ୟୋତିଷ ଚକ୍ରରେ ସ୍ଥିତ ଓ ଏମାନେ ସ୍ତିମିତ ବାୟୁ ଦ୍ୱାରା ଗତି କରୁଅଛନ୍ତି । ଏହି ଚକ୍ରରେ ୧୨ଗୋଟି ରାଶି, ଏହି ଏକ ୨ରାଶି ନବପାଦରେ ନକ୍ଷତ୍ରମାନ ଭୋଗ କରନ୍ତି ଏବଂ ନକ୍ଷତ୍ର ଗୋଟିକ ଚାରିପାଦ ଏହି ପ୍ରାୟ ବିଭାଗ କରି ଯାଇଅଛି । ୪ । ୫ ।୬।

ରବି ସୋମୌ ମଙ୍ଗଳଶ୍ଚ ବୁଧଶ୍ଚୈବ ବୃହସ୍ପତିଃ ।
ଶୁକ୍ରୋ ଶନିଶ୍ଚରଶ୍ଚୈବ ବାମାଭିମୁଖୀନଂ ବ୍ରଜେତ୍ ।
କେତୁଶ୍ଚ ସିଂହିକେୟଶ୍ଚ ଗଚ୍ଛତି ଦକ୍ଷିଣାମୁଖଂ । ୭ ।
ପାଦୈର୍ଦିକେନ ଧନଦ୍ୱୟଂ ହିମକରେ ମାସାର୍ଦ୍ଧ ମାସ କୁଜେ।
ମାସ ବାସରନାୟକୋ ସୁରଗୁରୁ ଦ୍ୱାଦଶମାସ ବସେତ୍ ।
ପକ୍ଷତ୍ରୀଣି ଦିନାନି ଚେନ୍ଦୁତନୟଃ ପକ୍ଷ ଦ୍ୱୟାର୍ଦ୍ଧଂ ଗୁରୁଃ
ପକ୍ଷଃସାର୍ଦ୍ଧ ସମାଦ୍ୱୟଂ ଖଳୁତମସାର୍ଦ୍ଧଂ ତଥା ବତ୍ସରେ । ୮ ।

ଚନ୍ଦ୍ର ଦୁଇଦିନ ଓ ଅର୍ଦ୍ଧଦିନ ଅର୍ଥାତ୍ ଦଣ୍ଡାଂଶ ଏକରାଶିରେ ରହନ୍ତି ମଙ୍ଗଳ ଏକମାସ ପନ୍ଦରଦିନ, ରବି ଏକମାସ, ଶୁକ୍ର ପଚିଶ ଦିନ, ବୁଧ ଅଠର ଦିନ, ବୃହସ୍ପତି ଏକବର୍ଷ ଏକମାସ, ଶନି ଦୁଇବର୍ଷ ଛମାସ, ରାହୁ ଓ କେତୁ ଏମାନେ ଏକବର୍ଷ ଛମାସ ଏକରାଶିରେ ରହି ବିପରୀତ ଗତିରେ ପଛ ରାଶିକୁ ଗମନ କରନ୍ତି । ୮ ।

## ରାଶି ଅଂଶ କଳା ପରିମାଣ ।

ବିକଳାନାଂ କଳାଷଷ୍ଟ୍ୟା ତତ୍ଷଷ୍ଟ୍ୟା ଭାଗ ଉଚ୍ୟତେ ।
ତତ୍ ତ୍ରିଂଶତା ଭବେଦ୍ରାଶି ର୍ଭଗଣୋ ଦ୍ୱାଦଶଂ ବତେ । ୯ ।

ଷାଠିଏ ବିକଳାରେ ଏକକଳା ଷାଠିଏ କଳାରେ ଏକଅଂଶ ତିରି ଅଂଶରେ ଏକରାଶି ବାର ରାଶିରେ ଏକ ଭଗଣ ପୂର୍ଣ୍ଣ ହୁଏ । ୯ ।

## ପାପ ଓ ଶୁଭଗ୍ରହ ସଂଜ୍ଞା ।

ଅର୍କୋ ନେନ୍ଦ୍ୱର୍କ ଶୌରାରା ପାପାସ୍ତଦ୍ଯୁତୋଃପରେ ।
ଶୁଭାଃପାପୌ ତମଃ କେତୂ ବିଷ୍ଣୁଧର୍ମୋତ୍ତରେରିତୌ । ୧୦ ।

କୃଷ୍ଣାଷ୍ଟମୀ ଠାରୁ ଶୁକ୍ଳାଷ୍ଟମୀ ପର୍ଯ୍ୟନ୍ତ ଚନ୍ଦ୍ରପାପ ଓ ରବି ଶନି ମଙ୍ଗଳ ଏମାନେ ପାପଗ୍ରହ ଓ ଏହାଙ୍କ ସହ ବୁଧ ଥିଲେ ପାପ ଗ୍ରହରେ ଗଣନୀୟ । ରାହୁ ଓ କେତୁ ବିଷ୍ଣୁ ଧର୍ମୋତ୍ତର ଗ୍ରନ୍ଥରେ ପ୍ରକାଶ ଅଛି କି ଶୁଭଗ୍ରହ ସହ ରହିଲେ ଶୁଭ ପାପଗ୍ରହ ସହିତ ଥିଲେ ପାପ ହୁଅନ୍ତି । ବୁଧ ଓ ବୃହସ୍ପତି ଏବଂ ଶୁକ୍ର ଏମାନେ ଶୁଭଗ୍ରହ । ୧୦ ।

## ମେଷାଦି ଦ୍ୱାଦଶ ରାଶିଙ୍କ ଭେଦସଂଜ୍ଞା ।

କ୍ରୂରୋଃଥସୌମ୍ୟଃ ପୁରୁଷୋଃଙ୍ଗନାଚ ଓଜୋଃଥଯୁଗ୍ମଂ ବିଷମଃସମଶ୍ଚ ।
ଚରସ୍ଥିର ଦ୍ୱ୍ୟାତ୍ମିକ ନାମଧେୟାଃମେଷାଦୟୋଃମୀ କ୍ରମଶଃ ପ୍ରଦିଷ୍ଟାଃ ।୧୧

ମେଷ କ୍ରୂର ବୃଷ ସୌମ୍ୟ ଏହି ପ୍ରାୟ ମୀନ ପର୍ଯ୍ୟନ୍ତ । ମେଷ ପୁରୁଷ ବୃଷ ସ୍ତ୍ରୀ, ମେଷ ଓଜ ବୃଷଯୁଗ୍ମ । ମେଷ ବିଷମ ବୃଷ ସମ । ମେଷ ଚର, ବୃଷସ୍ଥିର, ମିଥୁନ ଦ୍ୱ୍ୟାତ୍ମିକ ଏହି ପ୍ରାୟ ଗଣନାକ୍ରମେ ରାଶି ସଂଜ୍ଞା ହୁଅଇ ।

## ଲଗ୍ନାନ୍ତ ଚେକ ନିର୍ଣ୍ଣୟ ।।

ଦିଗ୍ଲଘ୍ନା ମରଦଣ୍ଡତୋ ଦିନଘଟିଃ ସ୍ୱାଭିରେକାଧିପାଦ୍ ।
ମଧ୍ୟୋ ନାଙ୍ଗଯୁତାର୍କ ଦାରଚରଣୈ ର୍କାଳଦ୍ଧ୍ନ ସାର୍ଦ୍ଧକଂ ।
ପିଣ୍ଡଂ ତଦ୍ବିଭଜେ ଗତେଷ୍ୟ ଘଟିକାପ୍ରାକ୍ ପଶ୍ଚିମାସ୍ୟେ ରବୌ ।
ତତ୍ପିଣ୍ଡଂ ଘଟିଭକ୍ତ ମଙ୍ଗବନ୍ନତଂ ମଧ୍ୟେ ସ୍ୱମଣ୍ଟ୍ୟଂଘ୍ରିସ୍ତ୍ରଃ ।୧୨।

ପରମ ଦିବସ ଦି ୩୩।୧୦ ରୁ ଦିନମାନକୁ ଫେଡ଼ିଲେ ତାହା ନାମ ମଧ୍ୟ ପାଦ ଏହି ମଧ୍ୟପାଦକୁ ପୂର୍ବୂଷ ଛାୟାପାଦରୁ ଫେଡ଼ ମୂଳ ସ୍ଥାନେ ୭ ମିଶାଇ ତାହାକୁ ଲବ୍ଧା କରି ହରଣ ନାମେ ରଖିବ । ଦିନାର୍ଦ୍ଧକୁ ୭ ରେ ଗୁଣି ଲବ୍ଧାକରି ସେହି ହରଣେ ହରିଲେ ଲବ୍ଧ ଦଣ୍ଡ ଓ ଲବ୍ଧା ଆସଇ ଯେବେ ସୂର୍ଯ୍ୟ ମଧ୍ୟାହ୍ନ ପୂର୍ବରେ ଥିବେ ତାହା ସେହି ଦଣ୍ଡଲବ୍ଧା

ହୁଏ ଯେବେ ମଧ୍ୟାହ୍ନ ପର ସୂର୍ଯ୍ୟ ଥାନ୍ତି ତେବେ ଲବ୍ଧ ଦଣ୍ଡାଦ ସୂର୍ଯ୍ୟ ସେତେ ସମସ୍ତ ଅଛି ସେହି ଦଣ୍ଡାଦରୁ ଦିନମାନ ଫେଡ଼ିଲେ ଉଦୟାଦ ଦଣ୍ଡ ଲଗ୍ନା ଆସଇ । ପୁଣି ଦଣ୍ଡଲଗ୍ନାରୁ ଛାୟାପାଦ ଆଣିବାକୁ ଦିନାର୍ଦ୍ଧକୁ ୬ ରେ ଗୁଣିଥିବ ଯେ ପିଣ୍ଡ ତାହାକୁ ଲବ୍ଧଦଣ୍ଡ ଲଗ୍ନାକୁ ଲଗ୍ନାକର ସେହି ପିଣ୍ଡକୁ ହରିଲେ ଲବ୍ଧ ଯେ ହେଲା ମୂଳରୁ ୬ ଫେଡ଼ି ଉପସେକ୍ତ ମଧ ପାଦ ମିଶାଇଲେ ଛାୟାପାଦ ଆସଇ । ୧୨ ।

## ଲଗ୍ନ ନିରୂପଣ ।

ରବେ ର୍ଭୁକ୍ତମାଂଶାଦ ଗୁଣିତଂ ଚ ସ ଉଦୟୈ ।
ଖାଗ୍ନ୍ୟାପ୍ତେନ ଭୁଯଂ ଲବ୍ଧଂ ଭୋଗ ଦଣ୍ଡାଦକଂ ଭବେତ୍ ।୧୩।

ଯେଉଁ ଦିନ ଲଗ୍ନ କରିବ ସେ ଦିନ ରବ୍ୟଂଶକୁ ଚତୁଷ୍କାଳ କ୍ରମରେ ସେହିମାସର ଲଗ୍ନମାନରେ ଗୁଣି ଷାଠିଏରେ ହରିଆଣି ମୂଳାସ୍ଥାନକୁ ଉରଣିରେ ହରିଲେ ଉଦୟ ସମସ୍ତକୁ ସେହି ଲଗ୍ନରୁ ଭୋଗ ହୋଇଅଛି ସେହି ଲଗ୍ନମାନକୁ ଫେଡ଼ିଲେ ଉଦୟାଦାରୁ ଲଗ୍ନହୁଏ ଓ ଯେତେ ଦଣ୍ଡକୁ ଲଗ୍ନଧରିବ ସେହି ପ୍ରମାଣେ ଲଗ୍ନମାନ ମିଶାଇଲେ ଇଷ୍ଟ ଲଗ୍ନ ଜାଣିବ ॥

## ଲଗ୍ନମାନ ।

୧ବେଦା ଗାବଙ୍କୁଭିଃ ୨କୃତାରସଶରୈ ୩ବାଣାଶ୍ବ ନନ୍ଦାକ୍ଷିଭି
୪ବାଣା ବାଣଗୁଣୈଃ ଶରାଶର ୫ଭୂକୈ ୬ରର୍ଥାଶ୍ବ ନେନ୍ଦାକ୍ଷିଭିଃ ।
୭ ବାଣା ରୂପଗୁଣୈଃ ୮ ଖରାରସଗୁଣୈ ୯ ରର୍ଥାଶ୍ବ ପକ୍ଷେନ୍ଦୁଭିଃ
୧୦ ବେଦାବାଣଗୁଣୈଃ ୧୧କୃତାଶ୍ବଶିଖିଭି ୧୨ସମାରସାର୍ଥୈଃ କ୍ରିୟାତ୍

| | | | | | |
|---|---|---|---|---|---|
| ମେଷ | ଦ ୪।୧୭ | ବୃଷ | ଦ ୪।୫୬ | ମିଥୁନ | ଦ ୫।୨୯ |
| କର୍କଟ | ଦ ୫।୩୫ | ସିଂହ | ଦ ୫।୨୫ | କନ୍ୟା | ଦ ୫।୨୨ |
| ତୁଳା | ଦ ୫।୩୧ | ବୃଶ୍ଚିକ | ଦ ୫।୩୭ | ଧନୁ | ଦ ୫।୧୫ |
| ମକର | ଦ ୪।୩୫ | କୁମ୍ଭ | ଦ ୪।୩ | ମୀନ | ଦ ୩।୫୭ |

## ଲଗ୍ନସ୍ଫୁଟ ନିରୂପଣ ।

ଲଗ୍ନ ଭୋଗଫଳଂ କୃତ୍ୱା ଖସପ୍ତୈ ର୍ଗୁଣିତଂ ତତଃ ।
ତଲ୍ଲଗ୍ନ ପ୍ରକଳଶ୍ଚୈବ ଭଜ ତତଃ ସ୍ଫୁଟଂ ଭବେତ୍ ।୧୫।

ଲଗ୍ନରୁ ଯେତେ ଭୋଗ ହୋଇଥିବ ତାହାକୁ ଲପ୍ତାଙ୍କର ହରଣରେ ଗୁଣି ରଖିବ । ସେହି ଲଗ୍ନମାନଙ୍କୁ ଲପ୍ତାଙ୍କର ଏହି ହରଣରେ ରଖିଥିବା ଅଙ୍କକୁ ହରିଲେ ଫଳ ଅଂଶ ଓ ହରଣଶେଷଙ୍କୁ ଷାଠିଏରେ ଗୁଣି ସେହି ହରଣେ ହରିଲେ କଳା ଓ ବିକଳା ଏବଂ ପରା ବିପରାଦ୍ଧ ହୁଏ ତାହା ରାଶିସ୍ଥାନରେ ମେଷ ଶୂନ୍ୟାଦିକ୍ରମେ ଲଗ୍ନପର୍ଯ୍ୟନ୍ତ ଯେତେ ଅଙ୍କ ରାଶି-ନାମରେ ଲେଖିଲେ ରାଶି ଅଂଶ କଳା ବିକଳା ପରା ବିପରାଦ୍ଧ ହୋଇ ଲଗ୍ନସ୍ଫୁଟ ହୁଅଇ । ୧୫ ।

### ଲଗ୍ନାଦି ଦ୍ୱାଦଶଭାବ ନାମ ।

ସାମର୍ଥ୍ୟଂ ତନୁକଲ୍ୟତେ ସମୁଦୟେ ବିତ୍ତଂ କୁଟୁମ୍ବଂ ତତୋ
ବିକ୍ରାନ୍ତଂ ସହଜଂ ତୃତୀୟଭବନେ ଯୋଦ୍ଧଂ ଚ ସଚ୍ଛାନ୍ତ୍ୟେତୁ ॥
ବନ୍ଧୁଂ ବାହ୍ୟ ସୁଖାଳୟାନ୍ୱିତତୋ ଧୀମନ୍ତ ପୁତ୍ରାଂସ୍ତତଃ
ଷଷ୍ଠେଽଥକ୍ଷତ ବଦ୍ଧୁର୍ଷୌ ମଦଗୃହେ କାମସ୍ତ୍ରିୟଂ ବର୍ତ୍ତର ।୧୬ ।
ରନ୍ଧ୍ରାୟୁର୍ମୃତୟୋଽଷ୍ଟମେ ଗୁରୁତପୋ ଭାଗ୍ୟାନ ଚତ୍ତଂ ତତୋ
ମାନାଜ୍ଞାସ୍ପଦ କର୍ମଣାଂ ଦଶମତେ କୁର୍ଯ୍ୟାଉତଶ୍ଚିନ୍ତନଂ ।
ପ୍ରାପ୍ତ୍ୟାୟୀ ବଥନାନ୍ତୟେ ଭବଗୃହେ ରିଃଫେ ତୁ ମନ୍ତ୍ରବ୍ୟୟୌ
ଯୋ ନ୍ୟ ସ୍ୱାମି ନୃତେକ୍ଷଣେ ଭୂପତୟ ପ୍ରେଷାଂଶ୍ଚ ତତ୍ତ୍ୱନ୍ୟଥା ॥

ଲଗ୍ନର ନାମ ସାମର୍ଥ୍ୟ ତନୁ କଲ୍ୟତା ଉଦୟ ଏତେ ଦ୍ୱିତୀୟର ବିତ୍ତ କୁଟୁମ୍ବ ତୃତୀୟର ବିକ୍ରାନ୍ତ । ସହଜ ଯୋଦ୍ଧ । ଚତୁର୍ଥର ବନ୍ଧୁ ବାହନ ସୁଖ ଗୃହ । ପଞ୍ଚମର ବୁଦ୍ଧିମନ୍ତ୍ରି ପୁତ୍ର । ଷଷ୍ଠରେ କ୍ଷତ ଦ୍ୱେଷ । ସପ୍ତମରେ ମଦ କାମ ସ୍ତ୍ରୀ । ଅଷ୍ଟମରେ ରନ୍ଧ୍ର ଆୟୁ ମୃତ୍ୟୁ । ନବମରେ ଗୁରୁତପ ଭାଗ୍ୟ । ଦଶମରେ ମାନ ଆଜ୍ଞା ଆସ୍ପଦ କର୍ମ । ଏକାଦଶରେ ପ୍ରାପ୍ତି ,ଆୟ ଦ୍ୱାଦଶରେ ରିଃଫ ଅନ୍ତ ବ୍ୟୟ ଏମାନ ସଜ୍ଞା ହୁଅଇ । ୧୬-୧୭ ।

### କେନ୍ଦ୍ରାଦି ସଂଜ୍ଞାନାମ ।

କେନ୍ଦ୍ରଂ ଚତୁଷ୍ଟୟଂ କଣ୍ଟକଂ ଚ ଲଗ୍ନାସ୍ତ ଦଶମ ଚତୁର୍ଥାନାଂସଜ୍ଞା ।
ପରତଃ ପଣଫର ମାପୋ କ୍ଲିମ ସଜ୍ଞଂ ତତଃ ପରତଃ॥ ୧୮ ।
ପଞ୍ଚମଂ ନବମଂ ଚୈବ ତ୍ରିକୋଣ ସମୁଦାହୃତଂ ।
ଚତୁର୍ଥ ମଷ୍ଟମଂ ଚୈବ ଚତୁରସ୍ରା ବିଦୁ ର୍ବୁଧାଃ । ୧୯ ।

ଲଗ୍ନ ଚତୁର୍ଥ ସପ୍ତମ ଦଶମ ଏମାନେ କେନ୍ଦ୍ର ସଂଜ୍ଞା । ଏହାର ପର ଅର୍ଥାତ୍ ଦ୍ୱିତୀୟ ପଞ୍ଚମ ଅଷ୍ଟମ ଏକାଦଶ ଏମାନେ ପଣଫର ସଂଜ୍ଞା । ଏହାର ପର ତୃତୀୟ ଷଷ୍ଠ ନବମ ଦ୍ୱାଦଶ ଏମାନେ ଅପୋକ୍ଲିମ ସଂଜ୍ଞା ନାମରେ ଅଭିହିତ । ୧୮ ।

ପ୍ରକାରାନ୍ତରେ—ପଞ୍ଚମ ନବମକୁ ତ୍ରିକୋଣ କୁହାଯାଏ । ଚତୁର୍ଥ ଅଷ୍ଟମକୁ ଚତୁରସ୍ର କହନ୍ତି । ୧୯ ।

## କ୍ଷେତ୍ର ଓ ହୋରାଦି ବର୍ଗ ।

କ୍ଷେତ୍ରଂ ହୋରା ଦ୍ରେକ୍କାଣଂ ଚ ନବାଂଶୋ ଦ୍ୱାଦଶାଂଶକଃ ।
ତ୍ରିଂଶାଂଶକଷ୍ଟବର୍ଗୋଽସ୍ମିଂ ସ୍ୟାଦ୍ଦ୍ୱିଯୌ ଯସ୍ୟ ତସ୍ୟ ସଃ । ୨୦ ।

କ୍ଷେତ୍ର ହୋରା ଦ୍ରେକ୍କାଣ ନବାଂଶ ଦ୍ୱାଦଶାଂଶ ତ୍ରିଂଶାଂଶ ଓ ସପ୍ତମାଂଶ ସଂଜ୍ଞା ହୁଅଇ । ୨୦ ।

## କ୍ଷେତ୍ରଜ୍ଞାନ ।

କୁଜ ଶୁକ୍ର ବୁଧେନ୍ଦ୍ୱାର୍କ ସୌମ୍ୟ ଶୁକ୍ରା ବକାଙ୍ଗଜଂ ।
ଜୀବାର୍କି ଭାନୁଜେଜ୍ୟାନାଂ କ୍ଷେତ୍ରାଣିସ୍ୟୁରଜାଦୟଃ । ୨୧ ।

ମେଷରେ ମଙ୍ଗଳ ବୃଷ ଶୁକ୍ର । ମିଥୁନ ବୁଧ କର୍କଟ ଚନ୍ଦ୍ର । ସିଂହ-ରବି-କନ୍ୟା-ବୁଧ-ତୁଳା-ଶୁକ୍ର । ବୃଶ୍ଚିକ-ମଙ୍ଗଳ ଧନୁ ବୃହସ୍ପତି ମକର ଶନି । କୁମ୍ଭ-ଶନି । ମୀନ-ବୃହସ୍ପତି ଏମାନେ ଏହି ରାଶିମାନଙ୍କର କ୍ଷେତ୍ରାଧିପ ହୁଅନ୍ତି । ୨୧ ।

## ହୋରା ଓ ଦ୍ରେକ୍କାଣ ଜ୍ଞାନ ।

ହୋରେ ବିଷମେଽର୍କେନ୍ଦ୍ୱୋ ସମରାଶୌ ଚନ୍ଦ୍ରସୂର୍ଯ୍ୟଯୋଃ କ୍ରମଶଃ ।
ସ୍ୱସ୍ତୁହା ଦ୍ୱାଦଶଭାଗାଃ ଦ୍ରେକ୍କାଣାଂ ପ୍ରଥମ ପଞ୍ଚନବପାନାଂ । ୨୨ ।

ବିଷମ ରାଶିରେ ଲଗ୍ନ ହେଲେ ଲଗ୍ନର ପ୍ରଥମାର୍ଦ୍ଧ ଅର୍ଥାତ୍ ୧୫ ଅଂଶ ମଧ୍ୟରେ ଥିଲେ ରବି ହୋରା ଏହା ପରଅଂଶରୁ ୩୦ ଅଂଶ ପର୍ଯ୍ୟନ୍ତ ଚନ୍ଦ୍ର ହୋରା ହୁଅଇ । ସମରାଶି ଲଗ୍ନରେ ପ୍ରଥମ ୧୫ ଅଂଶରେ ଚନ୍ଦ୍ର-ପରେ ୩୦ ଅଂଶ ପର୍ଯ୍ୟନ୍ତ ରବି ଏହିପରି ବିପରୀତ କ୍ରମେ ହୋରା ହୁଅଇ ।

ଦ୍ରେକ୍କାଣ—ଲଗ୍ନର ମୋଟ ୩୦ ଅଂଶ ଏଥିମଧ୍ୟରୁ ଯେତେ ଅଂଶ ସେହି ସମୟକୁ ଭୋଗ ହୋଇଥିବ ସେହି ସମୟକୁ ବିଚାର କରିବ ଯେ

୧୦ ଅଂଶ ଭିତରେ ଲଗ୍ନାଧିପ ଦ୍ରେକ୍କାଣାଧିପ । ୨୦ ଅଂଶ ଭିତରେ ଲଗ୍ନଠାରୁ ପଞ୍ଚମାଧିପ ଦ୍ରେକ୍କାଣାଧିପ । ୩୦ ଅଂଶ ଭିତରେ ନବମାଧିପ ଯେ ସେ ଦ୍ରେକ୍କାଣାଧିପ ହୁଅନ୍ତି । ୨୨ ।

## ନବାଂଶନାମ ।

ଚରାଣାଂ ସ୍ଥିରକୋଣାନାଂ ତତ୍ତଦାଦ୍ୟା ନବାଂଶକାଃ ।
ରାଶିନାଂ ସ୍ୱନବାଂଶୋ ଯଃ ସ ବର୍ଗୋତ୍ତମ ସଞ୍ଜ୍ଞକଃ । ୨୩ ।

ଲଗ୍ନ ଚରରାଶିରେ ହେଲେ ସେହି ଲଗ୍ନାଧିପଠାରୁ ରାଶିକ ୩ ଅଂଶ ୨୦ କଳାହିସାବ ଯେତେ ରାଶିପର୍ଯ୍ୟନ୍ତ ଲଗ୍ନସ୍ଫୁଟାଂଶ ହେବ ସେହି ରାଶି ନବାଂଶାଧିପ ହୁଅନ୍ତି ସ୍ଥିରରାଶିରେ ଲଗ୍ନହେଲେ ନବମାଧିପ ଠାରୁ ଲଗ୍ନ ଭୋଗ ଅଂଶ କ୍ରମେ ୩ ଅଂଶ ୨୦ କଳା ହିସାବେ ରାଶି ଗୋଟିକେ ଯେତେ ଭୋଗ ଯାଇ ଯେଉଁ ପର୍ଯ୍ୟନ୍ତ ରାଶି ହେଲା ସେ ରାଶ୍ୟାଧିପ ନବାଂଶାଧିପ ହୁଅଇ ଦ୍ୱ୍ୟାତ୍ମିକ ରାଶିର ଲଗ୍ନହେଲେ ପଞ୍ଚମ ରାଶିଠାରୁ ୩ ଅଂଶ ୨୦ । ୦ । କଳାହିସାବ ଯେତେ ରାଶି ପର୍ଯ୍ୟନ୍ତ ହେବ ସେହି ରାଶ୍ୟାଧିପ ନବାଂଶାଧିପ ହୁଅନ୍ତି । ୨୩ ।

## ଦ୍ୱାଦଶାଂଶ ତ୍ରିଂଶାଂଶ ଓ ସପ୍ତମାଂଶ କଥନଂ ।

ତତ୍ର ଷୋଢ଼ଶା ଦ୍ୱାଦଶ ଭାଗନ୍ୟଥା ଲଗ୍ନସ୍ୟ ବର୍ଗାଧିପତ ସ୍ତଦାଶ୍ୟାତ୍ର ।
ତ୍ରିଂଶାଂଶପା ଭୌମଶନୀଜ୍ୟ ସୌମ୍ୟଶୁକ୍ରାଭବତ୍ୟୋଜ ଗୃହେସମେତୁ ॥
ବଲ୍ଲୋମତଃ ପଞ୍ଚ ଶରାଷ୍ଟ ସପ୍ତ ବାଣାଃ କ୍ରମାଦୂରୁ ରନେକ ଶାସ୍ତ୍ରୈଃ ।
ସପ୍ତାଂଶପା ସ୍ତ୍ର୍ୟୋଜ ଗୃହେ ତଦାଶାଦ୍ୟୁଗ୍ମ ଗୃହେ ସପ୍ତମ ରାଶିପାତ୍ତ୍ର ॥

ଲଗ୍ନର ଯେତେ ଅଂଶ ଭୋଗ ହୋଇଥିବ ସେହି ଲଗ୍ନଠାରୁ ୨ଅଂଶ ୩୦କଳା ରାଶି ଗୋଟିକେ ହିସାବରେ ଯେତେ ରାଶିହେବ ସେହିଅଧିପତି ଦ୍ୱାଦଶାଂଶ ହୁଅଇ । ଲଗ୍ନ ଓଜ ଗୃହରେ ହେଲେ ଲଗ୍ନ ଯେତେ ଅଂଶ ଭୋଗ ହୋଇଥିବ ସେହି ପ୍ରମାଣେ ମଙ୍ଗଳ ୫ ଅଂଶ ଶନି ୫ ଅଂଶ ବୃହସ୍ପତି ୮ ଅଂଶ ବୁଧ ୭ ଅଂଶ । ଶୁକ୍ର ୫ ଅଂଶ । ଏହି ଅଂଶ ହିସାବେ ତ୍ରିଂଶାଂଶାଧିପ ହୁଅନ୍ତି । ଯୁଗ୍ମ ଲଗ୍ନ ହେଲେ ବିପରୀତରେ ପ୍ରଥମ ୫ ଅଂଶ ଶୁକ୍ର । ବୁଧ ୭ ଅଂଶ । ବୃହସ୍ପତି ୮ ଅଂଶ । ଶନି ୫ ଅଂଶ । ମଙ୍ଗଳ ୫ ଅଂଶ । ଏହି ଅଂଶ ହିସାବେ ତ୍ରିଂଶାଂଶାଧିପ ହୁଅନ୍ତି ।

ଲଗ୍ନ ଓଜ ରାଶି ହେଲେ ସେହି ରାଶିଠାରୁ ରାଶିକେ ୪ ଅଂଶ ୧୭ କଳାବ ଭୋଗ ପର୍ଯ୍ୟନ୍ତ ଯେତେ ରାଶି ସେହି ରାଶ୍ୟଧିପ ସପ୍ତାଂଶାଧିପ ଯୁଗ୍ମ ରାଶି ହେଲେ ଲଗ୍ନଠାରୁ ସପ୍ତମ ରାଶି ଗଣି ସେହିଠାରୁ ରାଶିକେ ଅଂଶ ୧୭ କଳା ୪ କ୍ରମାବ ସପ୍ତାଂଶାଧିପ ହୁଅନ୍ତି । ୨୪ । ୨୫ ।

## ଗଣ ନିର୍ଣ୍ଣୟ ।

କୃତ୍ତିକ ମଘା ବିଶାଖା ଅଶ୍ଲେଷା ଶତ ତାରକା ।
ଧନିଷ୍ଠା ଚନ୍ଦ୍ରା ଫଗୁନ୍ଦ୍ରା ଜ୍ୟେଷ୍ଠା ମୂଳା ଚ ରାକ୍ଷସାଃ । ୨୬ ।
ଅଶ୍ୱିନୀ ମୃଗଶିର ପୁଷ୍ୟା ପୁନର୍ବସୁ ସ୍ୱାତୀ ହସ୍ତଯୋଃ ।
ଅନୁରାଧା ଶ୍ରବଣା ରେବତ୍ୟା ଇତି ଦେବଗଣାଃ ସ୍ମୃତାଃ ।୨୭।
ରୋହିଣୀ ତନ୍ତ୍ର ଧିବାଣୀ ଯାମ୍ୟା ଚ ରୁଦ୍ର ମେବଚ ।
ତନ୍ତ୍ୟଭରଣୀ ତେଭ୍ୟୋ ମନୁଷ୍ୟାଂଶାଃ ପ୍ରକୀର୍ତ୍ତିତାଃ । ୨୮ ।

ନକ୍ଷତ୍ର ୩।୧୦।୧୬।୯।୨୪।୨୩।୧୮।୧୯ ଏ ରାକ୍ଷସଗଣ ।
ନକ୍ଷତ୍ର ୧।୫।୮।୭।୧୫।୧୩।୧୭।୨୨।୨୭ ଏ ଦେବଗଣ ।
ନକ୍ଷତ୍ର ୪।୧୧।୨୦।୨୫।୨।୬।୧୨।୨୧।୨୬ଏନରଗଣ । ୨୬।୨୭।୨୮

## ବର୍ଣ୍ଣବିଭାଗ ।

ମୀନାଳି କର୍କଟା ବିପ୍ରା କ୍ଷତ୍ରୀ ସିଂହ ତୁଳା ଧନୂ ।
ନୃଯୁଗ୍ମାଜ ଘଟା ବୈଶ୍ୟା କନ୍ୟା ଶୂଦ୍ର ବୃଷୋ ମୃଗାଃ । ୨୯ ।

ମୀନ ବୃଶ୍ଚିକ କର୍କଟ ଏ ବିପ୍ରବର୍ଣ୍ଣ । ସିଂହ ତୁଳା ଧନୁ ଏ କ୍ଷତ୍ରିୟବର୍ଣ୍ଣ ମିଥୁନ ମେଷ କୁମ୍ଭ ଏ ବୈଶ୍ୟବର୍ଣ୍ଣ । କନ୍ୟା ମକର ଏ ଶୂଦ୍ରବର୍ଣ୍ଣ ।୨୯।

## ଲଗ୍ନାଦି ଦେହ ବିଭାଗ ।

ଶୀର୍ଷଂ ମୁଖ ବାହୁ ହୃଦୟୋଦରାଣି କଟୀବସ୍ତି ଗୁହ୍ୟ ସଙ୍ଜ୍ଞକ ।
ଉରୁ ଜାନୁ ଜଂଘେ ଚରଣା ଦ୍ୱିତଂ ଚ ରାଶୟୋଃ ଜାଦ୍ୟାଃ ।୩୦ ।

ଲଗ୍ନ ମସ୍ତକ, ମୁଖ, ବାହୁ, ହୃଦୟ, ଉଦର, କଟି, ବସ୍ତି, ଗୁହ୍ୟ, ଉରୁଦ୍ୱୟ, ଜାନୁଦ୍ୱୟ, ଜଙ୍ଘଦ୍ୱୟ, ପାଦଦ୍ୱୟ ଏମାନେ ଲଗ୍ନଠାରୁ ଦକ୍ଷିଣାବର୍ତ୍ତରେ ଏହି ଶରୀରର ଅବୟବ ନିର୍ଣ୍ଣୟ କରାଯିବ । ୩୦ ।

## ରାଶିବର୍ଣ୍ଣ ।

ଅରୁଣ ଶୀତ ଶ୍ୱେତ ପାଟଳ ପାଣ୍ଡୁ ବିଚିତ୍ରାଃ ଶିତେତର ପିଶଙ୍ଗୌ ।
ପିଙ୍ଗଳଂ କର୍ବୁର ବଭ୍ରୁକ ମଳିନା ରୁଚୟୋ ଯଥାସଂଖ୍ୟଂ । ୩୧ ।

ମେଷ ଅରୁଣବର୍ଣ୍ଣ । ବୃଷ ଶୁକ୍ଳବର୍ଣ୍ଣ । ମିଥୁନ ଗୌରବର୍ଣ୍ଣ । କର୍କଟ ପାଟଳବର୍ଣ୍ଣ । ସିଂହ ପାଣ୍ଡୁରବର୍ଣ୍ଣ । କନ୍ୟା ବିଚିତ୍ରବର୍ଣ୍ଣ । ତୁଳା କୃଷ୍ଣବର୍ଣ୍ଣ । ବୃଶ୍ଚିକ ସ୍ୱର୍ଣ୍ଣବର୍ଣ୍ଣ । ଧନୁ ପିଙ୍ଗଳବର୍ଣ୍ଣ । ମକର କର୍ବୁରବର୍ଣ୍ଣ । କୁମ୍ଭ ବଭ୍ରୁକ ବର୍ଣ୍ଣ । ମୀନ ମଳିନବର୍ଣ୍ଣ । ଏହି ପ୍ରାପ୍ତ ରାଶିର ବର୍ଣ୍ଣ ନିର୍ଣ୍ଣୟ କରାଯାଏ । ୩୧ ।

## ଗ୍ରହ ଦିଗାଧିପ ।

ସୂର୍ଯ୍ୟଃ ଶୁକ୍ରଃ କ୍ଷମାପୁତ୍ରଃ ସୈଂହିକେୟଃ ଶନିଃ ଶଶୀ ।
ସୌମ୍ୟ ସ୍ତ୍ରିଦଶମନ୍ତ୍ରୀ ଚ ପ୍ରାଚ୍ୟାଦି ଦିଗଧୀଶ୍ୱରାଃ । ୩୨ ।

ପୂର୍ବଦିଗର ଅଧିପତି ରବି । ଆଗ୍ନେୟ କୋଣେ ଶୁକ୍ର । ଦକ୍ଷିଣଦିଗେ ମଙ୍ଗଳ । ନୈର୍ଋତ କୋଣେ ରାହୁ । ପଶ୍ଚିମ ଦିଗେ ଶନି । ବାୟୁକୋଣେ ଚନ୍ଦ୍ର । ଉତ୍ତର ଦିଗେ ବୁଧ । ଈଶାନ୍ୟ କୋଣେ ବୃହସ୍ପତି । ଏମାନେ ଦିଗଧିପ ହୁଅନ୍ତି । ୩୨ ।

## ରାଶି ଦିଗଧିପ ।

ପ୍ରାଚ୍ୟାଦି କକୁଭାଂ ନାଥା ଯଥାସଂଖ୍ୟଂ ପ୍ରଦକ୍ଷିଣଂ ।
ମେଷାଦ୍ୟା ରାଶୟୋ ଜ୍ଞେୟା ସ୍ତ୍ରିରାବୃତ୍ତି ପରିଭ୍ରମାତ୍ । ୩୩ ।

ପୂର୍ବଦିଗରେ ମେଷ ସିଂହ ଧନୁ ଏ ଅଧିପତି । ଦକ୍ଷିଣ ଦିଗରେ ବୃଷ କନ୍ୟା ମକର । ପଶ୍ଚିମଦିଗରେ ମିଥୁନ ତୁଳା କୁମ୍ଭ । ଉତ୍ତର ଦିଗରେ କର୍କଟ ବୃଶ୍ଚିକ ମୀନ ଏହି ରାଶି ଦିଗର ଅଧିପତି । ୩୩ ।

## ଗ୍ରହଙ୍କର ଉଚ୍ଚରାଶି ଓ ଅଂଶ ନିର୍ଣ୍ଣୟ ।

ସୂର୍ଯ୍ୟାଦୁଚ୍ଚାନ୍ ବିଦ୍ୟୁ ବୃଷ ମୃଗ ସ୍ତ୍ରୀ କୁଳୀରାନ୍ତ୍ୟଯୁକ୍
ଦିଗ୍ ବହ୍ନୀନ୍ଦ୍ର ଦ୍ୱ୍ୟଙ୍ଗ ତିଥି ଶରାନ୍ ସପ୍ତବିଂଶାଶ୍ଚ ବିଂଶାନ୍ ।
ଅଂଶାନ୍ୟେତାନ୍ ବଦତି ଯବନସ୍ତାନ୍ୟତୁଙ୍ଗାନ୍ୟୁତୁଙ୍ଗାନ୍
ତାନେବାଂଶାନ୍ ମଦନଭବନେଷ୍ୱାହୁ ନୀଚାନ୍ ମୁନୀନ୍ଦ୍ରାନ୍ । ୩୪ ।

ରବି ମେଷରେ ୧୦ ଅଂଶ ଉଚ୍ଚରାଶି । ଚନ୍ଦ୍ର ବୃଷରେ ୩ ଅଂଶ । ମଙ୍ଗଳ ମକରରେ ୨୮ ଅଂଶ । ବୁଧ କନ୍ୟାରେ ୧୫ ଅଂଶ । ବୃହସ୍ପତି କର୍କଟରେ ୫ ଅଂଶ । ଶୁକ୍ର ମୀନରେ ୨୭ ଅଂଶ । ଶନି ତୁଳାରେ ୨୦ ଅଂଶ । ଉଚ୍ଚରାଶି ଓ ଅଂଶ ଏହାର ଉର୍ଦ୍ଧ୍ୱ ଅଂଶଠାରୁ ପରମଉଚ୍ଚ ହୁଅଇ । ଏହି ଗ୍ରହମାନଙ୍କର ଏହି ରାଶିର ସପ୍ତମ ରାଶିର ସେହି ଅଂଶ ମାନଙ୍କର ନୀଚ ଓ ପରମ ନୀଚ ହୁଅନ୍ତି । ୩୪ ।

## ଗ୍ରହ ମୂଳ ତ୍ରିକୋଣ ରାଶି ।

ସିଂହ ବୃଷାଜ ପ୍ରମଦା କାର୍ମୁକଭୃତ୍ତୌଳ କୁମ୍ଭଧରାଃ ।
ସୂର୍ଯ୍ୟାଦୀନାଂ ମୂଳ ତ୍ରିକୋଣ ଭବନାନ୍ୟନୁକ୍ରମଶଃ । ୩୫ ।
ରବି ଭୌମ ଜୀବଭାର୍ଗବ ଶନୈଶ୍ଚରାଣାଂ ମୂଳତ୍ରିକୋଣଭାଗାଃ ପୂର୍ବଃ
ନଖ ରବି ଦିକ୍ ତିଥି ନଖସଙ୍କେନ୍ଦୋ ର୍ଦିଗ୍ଭୁଂଶକାଃ ସୃଷ୍ଟାହ ॥

ରବିଙ୍କର ମୂଳତ୍ରିକୋଣ ରାଶି ସିଂହ, ଏ ରାଶିରେ ୨୦ ଅଂଶମଧ୍ୟରେ ମୂଳ ତ୍ରିକୋଣ, ଚନ୍ଦ୍ରଙ୍କର ବୃଷରେ ୩ ଅଂଶ । ମଙ୍ଗଳ ମେଷରେ ୧୨ ଅଂଶ । ବୁଧ କନ୍ୟାରେ ୧୫ ଅଂଶ । ବୃହସ୍ପତି ଧନୁରେ ୧୦ ଅଂଶ । ଶୁକ୍ର ତୁଳରେ ୧୫ ଅଂଶ । ଶନୈଶ୍ଚରଙ୍କର କୁମ୍ଭରେ ୨୦ ଅଂଶ । ଏହି ରାଶି ଓ ଅଂଶ ଗ୍ରହଙ୍କର ମୂଳ ତ୍ରିକୋଣ । ୩୫, ୩୬ ।

## ଜନ୍ମ ସମୟେ ଗଣ୍ଡ ଦକ୍ଷଣ ।

ଅଶ୍ୱିନୀ ମଘା ମୂଳାନାଂ ତନ୍ତ୍ରୋ ଗଣ୍ଡାଦ୍ୟନାଡ଼ିକାଃ ।
ଅନ୍ତ୍ୟେଯଘୌଷ୍ଣେ ରେଗେନ୍ଦ୍ରାଣାଂ ପଞ୍ଚୈବ ଯବନା ଜଗୁଃ ।୩୭।

ଅଶ୍ୱିନୀ ମଘା ମୂଳା ଏହାଙ୍କର ଆଦ୍ୟ ତିନିଦଣ୍ଡରେ ବାଳକ ଜନ୍ମ ହେଲେ ଗଣ୍ଡଦୋଷ ହୁଅଇ । ରେବତୀ ଅଶ୍ଳେଷା ଜ୍ୟେଷ୍ଠା ଏହାଙ୍କର ଅନ୍ତ୍ୟ ପାଞ୍ଚଦଣ୍ଡରେ ଜନ୍ମ ହେଲେ ଗଣ୍ଡ ଦୋଷ । ଏହା ଯବନାଦି ଋଷିମାନେ କହିଅଛନ୍ତି । ୩୭ ।

ମୂଳେନ୍ଦ୍ରଯୋର୍ଦିବାଗଣ୍ଡୋ ନିଶାୟାଂ ପିତୃ ସର୍ପୟୋଃ ।
ରେବତ୍ୟଶ୍ୱିନୀ ସନ୍ଧ୍ୟାୟାଂ ପିତ୍ରୁ ମାତାତ୍ମଘାତକାଃ । ୩୮ ।

ମୂଳା ଜ୍ୟେଷ୍ଠା ଏ ଦୁଇ ନକ୍ଷତ୍ର ଦିବସରେ ଗଣ୍ଡ ହୁଏ ପିତୃଙ୍କୁ ମଘା ଅଶ୍ଳେଷା ରାତ୍ରରେ ଗଣ୍ଡ ମାତୃଙ୍କୁ । ରେବତୀ ଅଶ୍ୱିନୀ ସନ୍ଧ୍ୟାରେ ଗଣ୍ଡ । ଏ ନକ୍ଷତ୍ରେ ଜନ୍ମହେଲା ବାଳକଙ୍କୁ ଗଣ୍ଡ ହୋଇ ମୃତ୍ୟୁ କରଇ । ୩୮ ।

## ପୁରୁଷାକାର ଗଣ୍ଡ ନକ୍ଷତ୍ର

ଯସ୍ମିନ୍ନୃକ୍ଷେ ସ୍ଥିତୋଭାନୁଃ ତଦାଦୌ ମୂର୍ଦ୍ଧ୍ନି ବିନ୍ୟସେତ୍ ।
ମୁଖେ ତ୍ରୀଣି ତଥା ଦ୍ୱେ ଦ୍ୱେ ସ୍କନ୍ଧୟୋ ରୁଭୟୋରୁଭେ ।୩୯।
ଦ୍ୱୌ ଦ୍ୱୌ ହସ୍ତେ ପଞ୍ଚ ହୃଦି ନାଭୌ ଚୈକସ୍ତଥା ଗୁଦେ ।
ଏକଂ ଜାନୁଯୁଗେ ଦ୍ୱୌ ଚ ପାଦୟୋରଷ୍ଟ ବିନ୍ୟସେତ୍ ।୪୦।

ଫଳଂ----

ଚରଣର୍କ୍ଷେଷୁ ଯୋ ଜାତଃ ସ୍ୱଳ୍ପାୟୁର୍ଭବତ ପ୍ରୟେ ।
ଜଙ୍ଘେ ଦେଶାନ୍ତରଗତୋ ଊର୍ବୌ ସ୍ୟାତ୍ପାରଦାରିକଃ । ୪୧ ।

ନାଭୌ ସ୍ୱଳ୍ପଧନୋ ଜାତୋ ହୃଦୟେ ସ୍ୟାନ୍ମହାଧନୀ ।
ଗୁହ୍ୟେ ଜାତୋ ଭବେଦ୍ରୋଗୀ ଦୁଃଖଭାଗୀ ଭୁଜଦ୍ୱୟେ ।୪୨
ସ୍କନ୍ଧୟୋ ର୍ଭୋଗନିରତୋ ମୁଖେ ଧର୍ମରତଃ ସଦା ।
ମୂର୍ଦ୍ଧ୍ନି ରାଜା ମହାଦେବ ! ବାଳାନାଂ ଜନ୍ମତୋ ଭବେତ୍ ।୪୩।

ଜନ୍ମ ସମୟେ ରବି ଯେଉଁ ନକ୍ଷତ୍ରରେ ଥିବ ସେହି ନକ୍ଷତ୍ରଠାରୁ ମସ୍ତକରେ ୧ ନକ୍ଷତ୍ର ମୁଖରେ ୩ ନକ୍ଷତ୍ର । ସ୍କନ୍ଧରେ ୨ ନକ୍ଷତ୍ର ଉରରେ ୧ ନକ୍ଷତ୍ର । ହସ୍ତ ଦ୍ୱୟରେ ୪ନକ୍ଷତ୍ର, ହୃଦୟରେ ୫ ନକ୍ଷତ୍ର । ନାଭିରେ ୧ ନକ୍ଷତ୍ର ଗୁଦରେ ୧ ନକ୍ଷତ୍ର, ଜାନୁଯୁଗରେ ୨ ନକ୍ଷତ୍ର । ଦୁଇ ପାଦରେ ୮ ନକ୍ଷତ୍ର । ଏହା ନ୍ୟାସ କରି ଫଳ ନିରୂପଣ କରାଯିବ ॥ ଯଥା—ଉତ୍ତରଫାଲ୍‌ଗୁନୀ ନକ୍ଷତ୍ରେ ରବି ଅଛନ୍ତି ସେ ସମୟେ, ବାଳକ ଜନ୍ମ ହେଲା ତେବେ ଏହି ନ୍ୟାସ ଅନୁସାରେ ଫଳାଫଳ ନିର୍ଦ୍ଦେଶ କରାଗଲା । ଏହି ଅନୁଯାୟୀ ନକ୍ଷତ୍ର ନ୍ୟାସ କଲେ ଫଳ ପ୍ରଦର୍ଶିତ ହେବ

ମସ୍ତକେ ୧।୨ ନକ୍ଷତ୍ର ଫଳଂ ରାଜା ।

ମୁଖେ ୧୩।୧୪।୧୫ ଫଳଂ ଧର୍ମରତଃ ।
ଦକ୍ଷିଣହସ୍ତେ ୧୧।୨୦ ଫଳଂ ଦୁଃଖଂ ।
ହୃଦଯ୍ୟେ ୨୨।୨୩।୨୪।୨୫।-୨୭ ଫଳଂ ମଦ୍ଧା ଧନବାନ୍ ।
ଜାନୁଦ୍ୱୟେ ୨।୩ ଫଳଂ – ବଦେଶ ଗମନଂ ।



ସ୍କନ୍ଧେ୧୭।୧୬ଫଳଂଭୋଗଃ
ବାମହସ୍ତେ ୨୧ ଫଳଂ ଦୁଃଖଂ ।
ନାଭୌ ୨୭ ଫଳଂ ଅଲ୍ପ-ଧନଃ ।
ଉରେ ୧୮ ଫଳଂ ପର-ଦାରକଃ ।
ଗୁହ୍ୟେ ୧ଫଳଂ ଚୌରଃ ।

ପାଦଦ୍ୱଯ୍ୟେ ୪।୫।୬।୭।୮।୯।୧୦।୧୧ ଫଳଂ ଅଲ୍ପାୟୁଃ ।

ଏ ଉଦାହରଣ ନ୍ୟାସ ।

ଗଣ୍ଡଦୋଷ ।

ସନ୍ଧ୍ୟାରାତ୍ରି ଦିବାଭାଗେ ଗଣ୍ଡଯୋଗୋଭବେଃ ଶିଶୁଃ ।
ଆତ୍ମାନଂ ମାତରଂ ତାତଂ ବିନିହନ୍ତ୍ୟ ଯଥାକ୍ରମଂ । ୪୪ ।

ନକ୍ଷତ୍ର ଗଣ୍ଡ ସମୟ ସନ୍ଧ୍ୟା ସମୟେ ଶିଶୁକୁ ନିଜେ ରିଷ୍ଟ । ରାତ୍ରିରେ ମାତାକୁ ରିଷ୍ଟ । ଦିବାରେ ପିତାକୁ ରିଷ୍ଟ ହୁଅଇ ।

ଗଣ୍ଡଦୋଷ ବର୍ଷ ।

ଅଶ୍ୱିନ୍ୟା ଷୋଡ଼ଶାବ୍ଦାନି ପିତ୍ରେ ଚୈବାଷ୍ଟବତ୍ସରଂ ।
ମୂଲେ ଚୈବାବ୍ଦ ଚତ୍ୱାରେ ଜ୍ୟେଷ୍ଠାୟ୍ୟାଂ ଯୁଗ୍ମ ଏବ ଚ ॥
ସର୍ପେ ଶ୍ୱବ୍ଦଦ୍ୱୟଂ ଚୈବ ରେବତ୍ୟାମେକ ବତ୍ସରଃ । ୪୫ ।

ଅଶ୍ୱିନୀ ନକ୍ଷତ୍ର ଗଣ୍ଡ ହେଲେ ବ ୧୬ ର୍ଷ ପର୍ଯ୍ୟନ୍ତେ । ମଘାନକ୍ଷତ୍ରେ ବ ୮ ର୍ଷ । ମୂଳାନକ୍ଷତ୍ରେ ବ ୪ ର୍ଷ । ଜ୍ୟେଷ୍ଠାନକ୍ଷତ୍ରେ ବ ୨ ର୍ଷ । ଅଶ୍ଳେଷା ନକ୍ଷତ୍ରେ ବ ୨ ର୍ଷ । ରେବତୀ ନକ୍ଷତ୍ରେ ବ ୧ ର୍ଷ ଏହି ପରି-ମାଣେ ଗଣ୍ଡବର୍ଷ ହୁଅଇ । ୪୫ ।

## ଗଣ୍ଡଦୋଷ ଶାନ୍ତ୍ୟର୍ଥେ ଦ୍ରବ୍ୟାଣି ।

କୁଙ୍କୁମଂ ଚନ୍ଦନଂ କୁଷ୍ଠଂ ଗୋରୋଚନାମଥାପିବା ।
ଘୃତୈଶ୍ଚୈବାନ୍ୱିତଂ କୁର୍ଯ୍ୟାଚ୍ଚତୁର୍ଭିଃ କଳଶୈର୍ବୁଧଃ । ୪୬ ।
ସହସ୍ରାକ୍ଷେଣ ମନ୍ତ୍ରେଣ ବାଳକଂ ସ୍ନାପୟେଦ୍ଗୁରୁତଃ ।
ପିତୃଯୁକ୍ତଂ ଭବାଜାତଂ ମାତୃଯୁକ୍ତଂ ଚ ସନ୍ଧକଂ ।
ସ୍ନାପୟେତ୍ପିତୃମାତୃଭ୍ୟାଂ ସନ୍ଧ୍ୟୟୋର୍ବୁଭୟୋରପି । ୪୭ ।

କୁଙ୍କୁମ, ଚନ୍ଦନ, କୁଡ଼, ଗୋରୋଚନା, ଘୃତ ଏ ଦ୍ରବ୍ୟମାନ ଗୁରୁଗୋଷ୍ଠି କୁମ୍ଭରେ ରଖି ଦିବା ଗଣ୍ଡରେ ପିତୃଯୁକ୍ତବାଳକ । ରାତ୍ରି ଗଣ୍ଡରେ ମାତୃଯୁକ୍ତ । ସନ୍ଧ୍ୟା ଗଣ୍ଡରେ ପିତୃ ମାତୃ ଓ ବାଳକ ଏମାନଙ୍କୁ ସହସ୍ରାକ୍ଷ ମନ୍ତ୍ରରେ ସେହି ଗୁରୁକୁମ୍ଭ ସ୍ନାନ କରାଇଲେ ଗଣ୍ଡଦୋଷ ଶାନ୍ତ ହୁଅଇ । ୪୬, ୪୭ ।

## ଶାନ୍ତ୍ୟର୍ଥେ ଦାନଂ ।

କାଂସ୍ୟପାତ୍ରଂ ଘୃତୈଃପୂର୍ଣ୍ଣଂ ଗଣ୍ଡଦୋଷୋପଶାନ୍ତୟେ ।
ଦଦ୍ୟାଦ୍ଧେନୁଂ ହିରଣ୍ୟଂ ଚ ଗ୍ରହାଂଶ୍ଚାପି ପ୍ରପୂଜୟେତ୍ । ୪୮ ।

କାଂସ୍ୟ ପାତ୍ରରେ ଘୃତ ପୂର୍ଣ୍ଣକରି ଦାନଦେବ । ଧେନୁ ଓ ସ୍ୱର୍ଣ୍ଣଦାନ କରିବ ନବ ଗ୍ରହପୂଜା କଲେ ଗଣ୍ଡଦୋଷ ନାଶ ହୁଅଇ । ୪୮ ।

## ଭବ ରିଷ୍ଟ ।

ପାପ ସ୍ତ୍ରିକୋଣ କେନ୍ଦ୍ରେ ସୌମ୍ୟାଃ ଷଷ୍ଠାଷ୍ଟମବ୍ୟୟଗତାଶ୍ଚ ।
ସୂର୍ଯ୍ୟୋଦୟେ ପ୍ରସୂତଃ ସଦ୍ୟଃ ପ୍ରାଣାନ୍ ପରିତ୍ୟଜତି ଜନ୍ତୁଃ । ୪୯ ।

ରବି ମଙ୍ଗଳ ଶନି ପାପଯୁକ୍ତ ବୁଧ କ୍ଷୀଣଚନ୍ଦ୍ର ରାହୁ ଓ କେତୁ ଏମାନେ ଲଗ୍ନଠାରୁ ତ୍ରିକୋଣ କି ପଞ୍ଚମ ନବମ କେନ୍ଦ୍ର — ବା ଲଗ୍ନ ଚତୁର୍ଥ ସପ୍ତମ ଦଶମ ଏହି ସ୍ଥାନମାନଙ୍କରେ ଥାଇ । ସୌମ୍ୟ କି ଶୁଭଗ୍ରହ ପୂର୍ଣ୍ଣଚନ୍ଦ୍ର ଶୁଭଗ୍ରହଯୁକ୍ତ ବୁଧ ବୃହସ୍ପତି ଶୁକ୍ର ଏ ଗ୍ରହମାନେ ଷଷ୍ଠ ଅଷ୍ଟମ ଓ ଦ୍ୱାଦଶ ଏ ସ୍ଥାନମାନଙ୍କରେ ଥିବେ ତେବେ ରବିଙ୍କର ଉଦୟହୋଇ ଜନ୍ମମାନେ ଶିଶୁ ନାଶହୁଅନ୍ତି ଏଥିରୁ କହି ଗ୍ରହମାନଙ୍କର ଅବସ୍ଥାନରୁ କହି ସମୟ ଓ ଦିନରେ ଶିଶୁ ନାଶହୁଅଇ । ୪୯ ।

## ଚନ୍ଦ୍ରାରିଷ୍ଟ ।

ଷଷ୍ଠେଽଷ୍ଟମେ ଚନ୍ଦ୍ରଃ ସଦ୍ୟୋମରଣାୟ ପାପସନ୍ଦୃଷ୍ଟାଃ ।
ଅଷ୍ଟାଭିଃ ଶୁଭଦୃଷ୍ଟୋ ବର୍ଷୈର୍ମିଶ୍ରୈ ସ୍ତଦର୍ଦ୍ଧେନ । ୫୦ ।

ଜନ୍ମଲଗ୍ନଠାରୁ ଚନ୍ଦ୍ର ଯେବେ ଷଷ୍ଠ ଓ ଅଷ୍ଟମରେ ଥିବେ ପାପଗ୍ରହମାନେ ଦେଖୁଥିବେ ଏ ଯୋଗରେ ତତ୍କାଳେ ମୃତ୍ୟୁହୋଇ । ଚନ୍ଦ୍ରଉକ୍ତ ସ୍ଥାନରେ ଥାଇ ଶୁଭଗ୍ରହ ଦେଖୁଥିବେ ତେବେ ଆଠବର୍ଷରେ ମୃତ୍ୟୁହୋଇ । ପାପ ଓ ଶୁଭଗ୍ରହ ମିଶ୍ରଭାବେ ଦେଖୁଥିଲେ ଚାରିବର୍ଷରେ ମୃତ୍ୟୁ ପାପଗ୍ରହ ଓ ଶୁଭ ମଧ୍ୟର ଯେ ଗ୍ରହ ବଳବାନ୍ ସେହି ଅନୁପାତରେ ସମୟ ନିର୍ଦ୍ଦେଶ କରାଯିବ । ୫୦ ।

## ଚନ୍ଦ୍ରାରିଷ୍ଟ ଭଙ୍ଗ ।

ପକ୍ଷେ ସିତେ ଭବତି ଜନ୍ମ ଯଦି କ୍ଷପାୟାଂ
କୃଷ୍ଣେଽଥବାହନି ଶୁଭାଶୁଭ ଦୃଷ୍ଟମୂର୍ତ୍ତିଃ ।
ତଂ ଚନ୍ଦ୍ରମା ରିପୁ ବିନାଶ ଗତୋଽପ୍ୟଯତ୍ନା—
ଦାପତ୍ସୁ ରକ୍ଷତି ପିତେବ ଶିଶୁଂ ନ ହନ୍ତି । ୫୧ ।

ଉପର ଶ୍ଳୋକ ଅନୁଯାଇ ଋଷ୍ଟହେଲେ ମଧ୍ୟ ଶୁକ୍ଳପକ୍ଷରେ ରାତ୍ରିରେ ଜନ୍ମ ହୋଇଥିବ କୃଷ୍ଣପକ୍ଷରେ ଦିବସରେ ଜନ୍ମହେବ ଶୁଭ ଓ ଅଶୁଭ ଗ୍ରହମାନେ ଦେଖୁଥିବେ ତାହାହେଲେ ଯେପରି ଅପଦରୁ ଶିଶୁକୁ ପିତ ରକ୍ଷାକରେ ସେହି ପ୍ରାୟ ଚନ୍ଦ୍ରର ଋଷ୍ଟଭଙ୍ଗ ହୁଅଇ । ୫୧ ।

## ମଙ୍ଗଳାରିଷ୍ଟ ।

ଭୌମୋ ବିଲଗ୍ନେ ଶୁଭଦୈରଦୃଷ୍ଟଃ ଷଷ୍ଠେଽଷ୍ଟମେ ସୂର୍ଯ୍ୟସୁତେନଯୁକ୍ତଃ
ସଦ୍ୟଃଶିଶୁଂ ହନ୍ତି ବଦେନ୍ମୁଣିଶ୍ଚସ୍ମରେ ଯମାରୌ ନ ଶୁଭେକ୍ଷିତୌଚ ॥

ମଙ୍ଗଳ ଲଗ୍ନରେ ଥିବ ଶୁଭଗ୍ରହ ଦେଖୁ ନ ଥିବେ ତେବେ ଜନ୍ମମାତ୍ରେ ବାଳକ ମୃତ୍ୟୁ ହୁଅଇ । ଅଥବା ଷଷ୍ଠ ଓ ଅଷ୍ଟମରେ ମଙ୍ଗଳ ଥିବେ ଏହାଙ୍କ ସହିତ ଶନି ଥିବେ ଏପରି ଯୋଗେ ଜନ୍ମହେଲେ ବାଳକର ମୃତ୍ୟୁ ହୁଅଇ । ଏପରି ସପ୍ତମରେ ମଙ୍ଗଳ ଶନି ଥିବେ ଶୁଭଗ୍ରହ ଦେଖୁ ନ ଥିବେ ତେବେ ମଙ୍ଗଳ ଋଷ୍ଟ ହୋଇ ବାଳକ ମରଇ ଏହା ମଣିଋଷି କହି ଅଛନ୍ତି । ୫୨ ।

## ବୁଧ ରିଷ୍ଟ ।

କର୍କଟ ଯାମ୍ନି ସୌମ୍ୟୋ ଷଷ୍ଠାଷ୍ଟମ ଗଣିଗୋ ବଲଗ୍ନାର୍ଣ୍ଣାତ୍‌ ।
ଚନ୍ଦ୍ରେଣ ଦୃଷ୍ଟମୂର୍ତ୍ତି ବଂଷ ଚତୁର୍ଣ୍ଣେଣ ମାରୟନ୍ତ ସୁତଂ । ୬୩ ।

ଲଗ୍ନଠାରୁ ବୁଧ ଷଷ୍ଠ ଓ ଅଷ୍ଟମରେ ଥିବ କର୍କଟ ଗଣିରେ ବୁଧଥିବ ଧନୁଲଗ୍ନ କମ୍ବା କୁମ୍ଭଲଗ୍ନ ହେବ ଚନ୍ଦ୍ର ସମ୍ପୂର୍ଣ୍ଣଦୃଷ୍ଟେ ଦେଖୁଥିବ ଏ ଯୋଗରେ ବାଳକ ଜନ୍ମହେଲେ ଚାରିବର୍ଷରେ ମରଇ । ୬୩ ।

## ବୃହସ୍ପତି ରିଷ୍ଟ ।

ବୃହସ୍ପତି ଭୌମଗୃହେଽଷ୍ଟମସ୍ଥଃ ସୂର୍ଯ୍ୟେନ୍ଦୁ ଭୌମାର୍କଜଦୃଷ୍ଟମୂର୍ତ୍ତିଃ ।
ବର୍ଷୈସ୍ତ୍ରିଭିର୍ଭାର୍ଗବଦୃଷ୍ଟିହୀନୋ ଲୋକାନ୍ତରଂ ପାପୟତ ପସୂତଂ ।୬୦।

ବୃହସ୍ପତି ମେଷରେ କମ୍ବା ବୃଶ୍ଚିକରେ ଥିବ ଏ ସ୍ଥାନକୁ ଲଗ୍ନଠାରୁ ଅଷ୍ଟମ ହେବ ଯଥା—କନ୍ୟାଠାରୁ ମେଷରେ ଥିବ । ମେଷଠାରୁ ବୃଶ୍ଚିକରେ ବୃହସ୍ପତି ଥିବ ରବି ମଙ୍ଗଳ ଶନି ଏମାନେ ଦେଖୁଥିବେ ଶୁକ୍ର ଦେଖି ନ ଥିବ ଏହିଯୋଗରେ ବାଳକ ଜନ୍ମହେଲେ ତିନିବର୍ଷରେ ମୃତ୍ୟୁ ଘଟଇ ।

## ଶୁକ୍ର ରିଷ୍ଟ ।

ରବି ଶଶି ଭବନେ ଶୁକ୍ରୋଦ୍ୱାଦଶ ରିପୁ ରନ୍ଧ୍ରଗେଃଶୁଭୈଃ ସର୍ବୈଃ ।
ଦୃଷ୍ଟଃ କେତେଗତ ମରଣଂ ଷଡ୍‌ଭିର୍ବର୍ଷୈଃ କମିହ ତନ୍ଦ୍ରଂ । ୬୫ ।

ଶୁକ୍ର ଜନ୍ମ ସମୟେ କର୍କଟ ଓ ସିଂହରେ ଥିବ ଲଗ୍ନ ଏଥିରୁ ଦ୍ୱାଦଶ ଷଷ୍ଠ ଓ ଅଷ୍ଟମ ହେବ ଯଥା—କର୍କଟସ୍ଥ ଶୁକ୍ରକୁ ମିଥୁନ କୁମ୍ଭ ଓ ଧନୁ ଲଗ୍ନ ହେବ । ସିଂହସ୍ଥ ଶୁକ୍ରକୁ କର୍କଟ ମୀନ ଓ ମକର ଏ ଲଗ୍ନ ହେବ ଅଶୁଭ ଗ୍ରହମାନେ ଦେଖୁଥିବେ ଏପରି ଯୋଗରେ ଶୁକ୍ର ରିଷ୍ଟ-ହୋଇ ଛବର୍ଷରେ ବାଳକକୁ ମାରଇ । ୬୫ ।

## ଶନି ରିଷ୍ଟ ।

ମାରୟତ ଷୋଡ଼ଶାହ୍ନା ଶନୈଶ୍ଚରଃ ପାପବୀକ୍ଷିତୋ ଲଗ୍ନେ ।
ସଯୁକ୍ତୋ ମାସେନ ତୁ ବର୍ଷାଚ୍ଛୁଭୈର୍ଦୃଷ୍ଟ ମାରୟତ । ୬୬ ।

ଶନିକୁ ପାପଗ୍ରହ ଦେଖୁଥିବେ ଶନି ଲଗ୍ନରେ ଥିବ ତାହାହେଲେ ଷୋଳଦିନ ମଧ୍ୟେ ମୃତ୍ୟୁ ହୁଏ । ଶନି ସେ ପାପଯୁକ୍ତ ହୋଇ ଲଗ୍ନରେ

ଥିଲେ ମାସକେ ମାରଇ । ଅଥବା ପୂର୍ବରୂପେ ପାପଗ୍ରହ ଶନି ଥାଇ ଲଗ୍ନରେ ଥିଲେ ବର୍ଷକେ ବାଳକକୁ ମାରଇ । ୫୬ ।

### ଚନ୍ଦ୍ରରିଷ୍ଟ ।

ଚନ୍ଦ୍ର ଚତୁଷ୍ଟୟସ୍ଥୋ ମରଣାୟ ନିରୀକ୍ଷିତୋ ଭବତି ପାପୈଃ ।
ବର୍ଷୈର୍ବଦନ୍ତି ଦଶଭିଃ ଷୋଡ଼ଶଭିଃ କେଚଦାଚାର୍ଯ୍ୟାଃ । ୫୭ ।

ଲଗ୍ନ ଚତୁର୍ଥ ସପ୍ତମ ଦଶମରେ ଚନ୍ଦ୍ର ଥିବ ଏବଂ ପାପଗ୍ରହମାନେ ଦେଖନ୍ତି ତାହାହେଲେ ବାଳକକୁ ଦଶବର୍ଷରେ ମାରଇ । କୌଣସି ଜ୍ୟୋତିର୍ବିଦାଚାର୍ଯ୍ୟମାନେ କହନ୍ତି ଷୋଳବର୍ଷରେ ବାଳକକୁ ମାରଇ ॥

### ଧ୍ୱନିଭଙ୍ଗ ।

ଅଜବୃଷ କର୍କିଣି ଲଗ୍ନେ ରକ୍ଷତି ରାହୁଃ ସମସ୍ତ ରିଷ୍ଟିଭ୍ୟଃ ।
ପୃଥ୍ୱୀପତିଃ ପ୍ରସନ୍ନଃ କୃତ୍ୱାପରାଧଂ ଯଥା ପୁରୁଷଂ । ୫୮ ।

ଲଗ୍ନଠାରୁ ୧।୪।୭।୧୦ ସ୍ଥାନରେ ରାହୁଥିଲେ ମଧ୍ୟ ମେଷ ବୃଷ ଓ କର୍କଟ ରାଶି ହେବ ତେବେ ରାହୁର ସର୍ବାରିଷ୍ଟ ନାଶହୁଅଇ କିପରି ରାଜା ଅପରାଧି ପୁରୁଷକୁ ସୁପ୍ରସନ୍ନ ହେଲେ ପୁରୁଷ ଯେପରି ଅନାହତ ହୁଏ ବାଳକ ସେହି ପ୍ରାୟ ହୋଇ ଜୀବିତ ରହଇ । ୫୮ ।

### କେତୁରିଷ୍ଟ ।

କେତୁର୍ଯସ୍ମିନ୍ନୃକ୍ଷେଭ୍ୟୁଦିତ ସ୍ତସ୍ମିନ୍ ପ୍ରସୂୟତେ ଯସ୍ତୁ ।
ରୌଦ୍ରେ ସର୍ପମୁହୂର୍ତ୍ତେ ପ୍ରାଣୈଃ ସନ୍ତ୍ୟଜ୍ୟତେ ଜନ୍ତୁଃ । ୫୯ ।

କେତୁ ଯେଉଁ ନକ୍ଷତ୍ରରେ ଥିବେ ସେହି ନକ୍ଷତ୍ର ଆର୍ଦ୍ରା ମୁହୂର୍ତ୍ତ ଓ ଅଶ୍ଳେଷା ମୁହୂର୍ତ୍ତ ସମୟରେ ଯେଉଁ ବାଳକ ଜନ୍ମ ହୁଅଇ ବାଳକ ସେହି ମୁହୂର୍ତ୍ତରେ ମୃତ୍ୟୁ ହୁଅଇ । ୫୯ ।

### ଦ୍ରେକ୍କାଣରିଷ୍ଟଂ ।

ଲଗ୍ନଜେ ଦ୍ରେକ୍କାଣେ ନିଗଡ଼ାହି ବିହଙ୍ଗମ ପାଶଧରସଙ୍କ୍ଷଃ ।
ମରଣାୟ ସପ୍ତବର୍ଷୈଃ କ୍ରୂର ଯୁତାନ୍ ସ୍ୱପେତ ଦୃଷ୍ଟାଃ । ୬୦ ।

ଲଗ୍ନ ସମୟ ନିଗଡ଼ଦ୍ରେକ୍କାଣ ସର୍ପଦ୍ରେକ୍କାଣ ପକ୍ଷିଦ୍ରେକ୍କାଣ ପାଶଧରଦ୍ରେକ୍କାଣ ହୁଅଇ ଅଥବା ସେହି ଦ୍ରେକ୍କାଣରେ ପାପଗ୍ରହ ଲଗ୍ନାଧିପ ଦେଖୁଥିବ ତେବେ ବାଳକକୁ ସାତବର୍ଷରେ ରିଷ୍ଟହୋଇ ମାରଇ ॥

## ସର୍ବଗ୍ରହ ନଷ୍ଟଭଙ୍ଗ ।

ଏକୋଽପି କେନ୍ଦ୍ର ଭବନେ ନବପଞ୍ଚମେ ବା
ସ୍ୱସ୍ଥୋଚ୍ଚଯୁଖ ବମଳୀକୃତ ଧର୍ ବଭଗଃ ।
ନିଃଶେଷଦୋଷମପହୃତ୍ୟ ଶୁଭଂ ପ୍ରସୂତଂ
ଦୀର୍ଘାୟୁଷଂ ବଗତରୋଗ ଭୟଂକରୋତ । ୬୧ ।

ବୃହସ୍ପତ କମ୍ବା ଶୁକ୍ର ଏଥିରୁ ଯେ ଗ୍ରହ ଏକାକୀ ହୋଇ କେନ୍ଦ୍ର [ ୧।୪।୭।୧୦ ] ଓ ନବ ପଞ୍ଚମରେ ଥିବ କୌଣସି ଗ୍ରହ ତାହା-ସଙ୍ଗେ ନ ଥିବ । ସେ ଗ୍ରହ ସୂର୍ଯ୍ୟ କରଣରେ ଲୁପ୍ତହୋଇ ନ ଥିବ ଅର୍ଥାତ୍ ଅସ୍ତହୋଇ ନ ଥାଇ ଧଗମାନଙ୍କରେ ଉଜ୍ଜ୍ୱଳ ହୋଇ ପ୍ରକାଶ ପାଉଥିବେ ଏପର ଯୋଗରେ ଯେତେ ରଷ୍ଟ ଥିବ ସମସ୍ତ ନାଶହୋଇ ଦୀର୍ଘାୟୁ ହୁଅର ଓ ରୋଗସ୍ଥାନ ହୁଅଇ । ୬୧ ।

## ଭାବକାରକ ଜାରକ ।

ଦ୍ୟୁମଣିରମରମନ୍ତ୍ରୀ ଭୂସୁତଃ ସୋମ ସୌମ୍ୟୌ
ଗୁରୁ ଇନତନୟାର୍କୌ ଭାର୍ଗବୋ ଭାନୁ ପୁତ୍ରଃ ।
ଧନକର ଧବଜେଜୌ ଜୀବଭାନୁଜ୍ଞମନ୍ଦାଃ ।
ସୁରଗୁରୁ ଇନସୂନୁଃ କାରକାଖ୍ୟାଦଲଗ୍ନାତ୍ । ୬୨ ।

ଲଗ୍ନ ଠାରୁ ପ୍ରଥମଭାବର କାରକ ଗ୍ରହ ରବ । ଦ୍ୱିତୀୟଭାବରେ ବୃହ-ସ୍ପତ । ତୃତୀୟଭାବରେ ମଙ୍ଗଳ । ଚତୁର୍ଥଭାବରେ ଚନ୍ଦ୍ର ଓ ବୁଧ । ପଞ୍ଚମ-ଭାବରେ ବୃହସ୍ପତ । ଷଷ୍ଠଭାବରେ ଶନ ଓ ମଙ୍ଗଳ ସପ୍ତମଭାବରେ ଶୁକ୍ର ଅଷ୍ଟମଭାବରେ ଶନ । ନବମଭାବରେ ରବ ଓ ବୃହସ୍ପତ । ଦଶମ-ଭାବରେ ବୃହସ୍ପତ ରବ ବୁଧ ଓ ଶନ । ଏକାଦଶଭାବରେ ବୃହସ୍ପତ । ଦ୍ୱାଦଶ-ଭାବରେ ଶନ ଏମାନେ ଭାବର କାରକାଧିପ ହୁଅନ୍ତି । ୬୨ ।

## ରବଙ୍କ କରକ ।

ପିତୃ ପ୍ରତାପାରୋଗ୍ୟମନଃଶ୍ରୀରୁଚଜ୍ଞାନୋଦୟକାରକଃ ସୂର୍ଯ୍ୟଃ ॥

ପିତୃ ପ୍ରତାପ ଅରୋଗ୍ୟ ମନଃ ଶ୍ରୀ ରୁଚ ଜ୍ଞାନୋଦୟ-କାରକ ରବଙ୍କର । ୬୩ ।

## ଚନ୍ଦ୍ର କାରକ ।

ମାତୃ ମନସ୍ତୁଷ୍ଟି ସୁଗନ୍ଧ ଅଥ ରସ ଗୋଧୂମ ମୋଦକଦ୍ୱିଜଭକ୍ତି
ଏତୃ କଥିତୃ କାରକଶ୍ଚନ୍ଦ୍ରଃ । ୭୪ ।

ମାତୃ ମନସ୍ତୁଷ୍ଟି ସୁଗନ୍ଧ ରସ ଗୋଧୂମ ମୋଦକ ଦ୍ୱିଜଭକ୍ତି ଯଥେଚ୍ଛା କାର୍ଯ୍ୟ କାରକ ଚନ୍ଦ୍ରଙ୍କର । ୭୪ ।

## ମଙ୍ଗଳ କାରକ ।

ପରାକ୍ରମ ବିଜୟ ବିଖ୍ୟାତ ସଂଗ୍ରାମ ସାହସ ସେନାପତ୍ୟ ଦଣ୍ଡନେତୃତ୍ୱ
ଶଙ୍ଖ ପରଶ୍ୱଧ କୁନ୍ତକୁଠାର ଶତଘ୍ନୀ ଭିନ୍ଦପାଳ ଧନୁର୍ବାଣ ନୈପୁଣ୍ୟ
ଧୃତ ଗାମ୍ଭୀର୍ଯ୍ୟ କାମକ୍ରୋଧ ଶତ୍ରୁବୃଦ୍ଧି ଅଗ୍ରହାବଗ୍ରହ ପରାପବାଦ
ସ୍ୱତନ୍ତ୍ରଭ୍ରାତୃ ଭୂକାରକଃ କୁଜଃ । ୭୫ ।

ପରାକ୍ରମ ବିଜୟ ବିଖ୍ୟାତ ସଂଗ୍ରାମ ସାହସ ସେନାପତ୍ୟ ଦଣ୍ଡନେତୃତ୍ୱ ଶଙ୍ଖ ପରଶ୍ୱଧ କୁନ୍ତ କୁଠାର ଶତଘ୍ନୀ ଭିନ୍ଦପାଳ ଧନୁର୍ବାଣନିପୁଣତା ଧୃତ ଗମ୍ଭୀରତା କାମ କ୍ରୋଧ ଶତ୍ରୁବୃଦ୍ଧି ଅଗ୍ରହ ଅବଗ୍ରହ ପରାପବାଦ ସ୍ୱତନ୍ତ୍ର ଭ୍ରାତୃ ଭୂମି କାରକ ମଙ୍ଗଳ । ୭୫ ।

## ବୁଧ କାରକ ।

ସନ୍ତତି ଶାନ୍ତି ବିନୟଭକ୍ତି ମତି ମାତୁଳ ବାନ୍ଧବ ଜ୍ଞାତି ଗୋତ୍ର
ସମୃଦ୍ଧି ଗଣିତ ପ୍ରଜ୍ଞା ବେଦାନ୍ତବିଦ୍ୟାକାରକୋ ବୁଧଃ । ୭୬ ।

ସନ୍ତତି, ଶାନ୍ତି, ବିନୟ, ଭକ୍ତି, ବୁଦ୍ଧି, ମାତୁଳ, ବାନ୍ଧବ, ଜ୍ଞାତି, ଗୋତ୍ର ସମୃଦ୍ଧି ଗଣିତ ପ୍ରାଜ୍ଞ, ବେଦାନ୍ତ ବିଦ୍ୟା କାରକ ବୁଧ । ୭୬ ।

## ବୃହସ୍ପତି କାରକ ।

ବାଗ୍ ଧୋରଣୀ ମନ୍ତ୍ରବଳ ତନ୍ତ୍ର ନୈଷ୍ଠିକ ଗଜ ତୁରଙ୍ଗ ଯାନ
ନିଗମାବୋଧ କର୍ମପୁତ୍ର ସମ୍ପଜ୍ଜୀବନୋପାୟ କର୍ମଯୋଗ ସିଂହାସନ
କାରକୋ ଗୁରୁଃ । ୭୭ ।

ବାଣୀ, ବାହନ, ମନ୍ତ୍ରବଳ, ତନ୍ତ୍ରନୈଷ୍ଠିକ, ଗଜ, ତୁରଙ୍ଗ ଯାନ, ନିଗମାବୋଧ, କର୍ମ, ପୁତ୍ର, ସମ୍ପଦ, ଜୀବନୋପାୟ, କର୍ମଯୋଗ, ସିଂହାସନ କାରକ ବୃହସ୍ପତି । ୭୭ ।

## ଶୁକ୍ର କାରକ ।

ସଂଗୀତ ସାହିତ୍ୟ ହାସ୍ୟରସାଦ୍ଭୁତ ମଦନ ଯୁବତୀ ରତକେଳି ବିଳାସ
ବିଟେଣ ଚନ୍ଦକାନ୍ତ ସୌନ୍ଦର୍ଯ୍ୟ ଯୁବତୀ ରାଜବଶୀକରଣ ରାଜପୁରୁଷବଶୀ-
କରଣ ଗାରୁଡ଼େନ୍ଦ୍ର ଜାଲ ମାଳା ବୈଶଦ୍ୟମନ୍ଦଦର୍ଶ ମାଦକଷ୍ଟୈ
ଶ୍ୱର୍ଯ୍ୟ କାବ୍ୟକଳା ସମ୍ଭୋଗ କଳତ୍ରକାରକଃ ଶୁକ୍ରଃ । ୭୮ ।

ସଙ୍ଗୀତ, ସାହିତ୍ୟ, ହାସ୍ୟରସ, ଅଦ୍ଭୁତ, ମଦନ, ସ୍ତ୍ରୀରତ, କ୍ରୀଡ଼ା, ବିଳାସ, ବିଟେଣ, ଚନ୍ଦକାନ୍ତ ସୁନ୍ଦରତା, ଯୁବତୀ, ରାଜବଶୀକରଣ, ରାଜ ପୁରୁଷ ବଶୀକରଣ, ଗାରୁଡ଼, ଇନ୍ଦ୍ରଜାଲ, ମାଳା, ଜଳ୍ପଲତା, ମନ୍ଦଦର୍ଶ ମାଦକ, ଅଷ୍ଟୈଶ୍ୱର୍ଯ୍ୟ, କାବ୍ୟକଳା, ସମ୍ଭୋଗ, ସ୍ତ୍ରୀକାରକ ଶୁକ୍ର । ୭୮ ।

## ଶନି କାରକ ।

ଲୋଭ ମୋହ ଭ୍ରମ ପରପୀଡ଼ା, ନିର୍ଘାତ ନୈଷ୍ଠୁର୍ଯ୍ୟ ଦୁର୍ମତି ଦାରିଦ୍ର୍ୟ
ଦୁର୍ଦ୍ଦଶାମସ୍ତୁ ବାତ ବନ୍ଧନ ମହିଷ ଯବାଗୁ କୃଷ୍ଣଧାନ୍ୟାୟୁଷ୍ୟ ଜୀବନୋ-
ପାୟ କାରକଃ ଶନିଃ । ୭୯ ।

ଲୋଭ, ମୋହ, ଭ୍ରମ, ପରପୀଡ଼ା, ନିର୍ଘାତ, ନିଷ୍ଠୁରତା, ଦୁର୍ବୁଦ୍ଧି ଦରିଦ୍ରତା, ଦୁର୍ଦ୍ଦଶା, ରୋଗ, ବାତ, ବନ୍ଧନ, ମହିଷ, ଯବାଗୁ, କୃଷ୍ଣଧାନ୍ୟ ଆୟୁଷ୍ୟ, ଜୀବନୋପାୟ କାରକ ଶନି ।

## ରାହୁ କାରକ ।

ଯଶଃ ପ୍ରତିଷ୍ଠା ଛତ୍ର କାରକୋ ରାହୁଃ । ୮୦ ।

ଯଶ, ପ୍ରତିଷ୍ଠା ଛତ୍ରକାରକ ରାହୁ ।

## କେତୁ କାରକ ।

ବ୍ରଣରୋଗ ଚର୍ମୋଡ ଶୂଳାସ୍ଫୋଟ କ୍ଷୁଧାର୍ତ୍ତି କାରକଃ କେତୁଃ । ୮୧ ।

ବ୍ରଣରୋଗ, ଚର୍ମରୋଗ, ଶୂଳ, ବିସ୍ଫୋଟ, କ୍ଷୁଧାର୍ତ୍ତିକାରକ କେତୁ ॥

## ଗ୍ରହ ଚକ୍ର ।

ମହୀଶୀ ପୃଥ୍ୱୀ ଶଶିଭୌମଜୀବା ସୁରେଜ୍ୟଚନ୍ଦ୍ରୌ ସୂର୍ଯ୍ୟ ଶଶାଙ୍କଜୀବାଃ ।
ଅଦିତ୍ୟ ଶୁକ୍ରୌ ରବିଚନ୍ଦ୍ର ଭୌମାବୁଧାର୍କ୍କୌ ଚନ୍ଦ୍ରଜ ହର୍ଷଦୌ ଚ ॥

ରବିଙ୍କର ମିତ୍ର ଗ୍ରହ ଚନ୍ଦ୍ର ମଙ୍ଗଳ ବୃହସ୍ପତି । ଚନ୍ଦ୍ରଙ୍କର ମିତ୍ର ରବି ବୁଧ । ମଙ୍ଗଳଙ୍କର ମିତ୍ର ରବି ଚନ୍ଦ୍ର ବୃହସ୍ପତି । ବୁଧଙ୍କର ମିତ୍ର ରବି ଶୁକ୍ର ବୃହସ୍ପତିଙ୍କର ମିତ୍ର ରବି, ଚନ୍ଦ୍ର, ମଙ୍ଗଳ । ଶୁକ୍ରଙ୍କର ମିତ୍ର ବୁଧ ଶନି । ଶନିଙ୍କର ମିତ୍ର ବୁଧ, ଶୁକ୍ର ଏମାନେ ଗ୍ରହମାନଙ୍କର ମିତ୍ର ହୁଅନ୍ତି ।୭୨ ।

## ଗ୍ରହ ଶତ୍ରୁ ।

ଶିତାଶିତୌ ଚନ୍ଦ୍ରମସୋ ନ କଶ୍ଚିତ୍ ବୁଧଃଶଶିସୌମ୍ୟଶିତୌରବୀନ୍ଦୂ ।
ରବୀନ୍ଦୁବକ୍ରାରବତସ୍ତମିତ୍ରାମିତ୍ରାଭିଶେଷାସ୍ତୁ ସମାଃ ପ୍ରଦିଷ୍ଟାଃ । ୭୩ ।

ରବିଙ୍କର ଶତ୍ରୁ ଶୁକ୍ର, ଶନି ଚନ୍ଦ୍ରଙ୍କର କେହି ଶତ୍ରୁ ନାହିଁ । ମଙ୍ଗଳଙ୍କର ବୁଧ ଶତ୍ରୁ । ବୁଧଙ୍କର ଶତ୍ରୁ ଚନ୍ଦ୍ର । ବୃହସ୍ପତିଙ୍କର ଶତ୍ରୁ ବୁଧ ଶୁକ୍ର । ଶୁକ୍ରଙ୍କର ଶତ୍ରୁ ରବି, ଚନ୍ଦ୍ର । ଶନିଙ୍କର ରବି ଚନ୍ଦ୍ର ମଙ୍ଗଳ ଏମାନେ ଶତ୍ରୁ ହୁଅନ୍ତି । ମିତ୍ରଗ୍ରହ ଓ ଶତ୍ରୁଗ୍ରହର ପରେ ଯେ ଗ୍ରହ ରହିଲେ ସେ ଗ୍ରହସମ ହୁଅନ୍ତି । ୭୩ ।

## ଗ୍ରହ ତତ୍କାଳ ମିତ୍ର ।

ଚତୁର୍ଥ ଦଶବୃତ୍ତାନ୍ତ ମିତ୍ରଲାଭସ୍ଥାଃ ପରସ୍ପରଂ ।
ତତ୍କାଳ ମିତ୍ରାଣ୍ୟଚକ୍ଷୁଃ କଶ୍ଚିଦୁକ୍ତୋଽନ୍ୟଥାରିପୂଃ । ୭୪ ।

ଚତୁର୍ଥ ଦଶମ ଭାବରେ ସ୍ଥିତ ଗ୍ରହଦୁହେଁ ଦ୍ୱିତୀୟ ଦ୍ୱାଦଶରେ ସ୍ଥିତ ଗ୍ରହ ଦୁହେଁ ତୃତୀୟ ଏକାଦଶରେ ସ୍ଥିତ ଗ୍ରହ ଦୁହେଁ ଏମାନେପରସ୍ପରରେ ତତ୍କାଳରେ ମିତ୍ର ହୁଅନ୍ତି । କୌଣସ ଜ୍ୟୋତିର୍ବିଦମାନେ କହନ୍ତି ଗ୍ରହ ସ୍ୱ ଉଚ୍ଚରେ ଥିଲେ ସମସ୍ତ ଗ୍ରହଙ୍କର ମିତ୍ର । ୭୪ ।

## ଗ୍ରହଙ୍କର ଦୃଷ୍ଟିଚକ୍ର ।

ପାଦୈକଦୃଷ୍ଟିର୍ଦଶମ ତୃତୀୟେ ଦ୍ୱିପାଦ ଦୃଷ୍ଟିର୍ନବ ପଞ୍ଚମେଷୁ ।
ତ୍ରିପାଦ ଦୃଷ୍ଟିଶ୍ଚତୁରସ୍ରକେତୁ ସଂପୂର୍ଣ୍ଣ ଦୃଷ୍ଟିଃ ସମସପ୍ତମେ ତୁ । ୭୫ ।

ଦଶମ ଓ ତୃତୀୟରେ ଗ୍ରହମାନେ ପରସ୍ପରରେ ଏକପାଦରେ ଦେଖନ୍ତି ନବମ ଓ ପଞ୍ଚମରେ ଦ୍ୱିପାଦ ଦୃଷ୍ଟି । ଚତୁର୍ଥ ଓ ଦଶମରେ ତ୍ରିପାଦ ଦୃଷ୍ଟି । ସମସପ୍ତମ ଗ୍ରହ ପରସ୍ପରରେ ପୂର୍ଣ୍ଣଦୃଷ୍ଟି ହୁଅଇ । ଅର୍ଥାତ୍ ପୂର୍ଣ୍ଣଭାବେ ଦେଖନ୍ତି । ୭୫ ।

## ସ୍ଫୁଟଗ୍ରହ ଦୃଷ୍ଟି ।

ପଶ୍ୟନ୍ତି ସପ୍ତମାନ୍ ସର୍ବେ ଶନି ଜୀବ କୁଜାଃ ପୁନଃ ।
ବିଶେଷତଶ୍ଚ ତ୍ରିଦଶ ତ୍ରିକୋଣ ଚତୁରସ୍ରଗାନ୍ । ୭୬ ।

ସମସ୍ତ ଗ୍ରହମାନେ ସମସପ୍ତମରେ ଦେଖନ୍ତି । ବିଶେଷ ଭାବରେ ଶନି ତୃତୀୟ ଓ ଦଶମକୁ ଦେଖନ୍ତି । ବୃହସ୍ପତି ନବମ ଓ ପଞ୍ଚମକୁ ଦେଖନ୍ତି ମଙ୍ଗଳ ଚତୁର୍ଥ ଓ ଅଷ୍ଟମକୁ ଦେଖନ୍ତି । ଗ୍ରହଙ୍କର ପରସ୍ପର ଦୃଷ୍ଟିରେ ଗ୍ରହବଳ ଅନୁଯାୟୀ ଫଳ ନିରୂପଣ ହୁଅଇ । ୭୬ ।

## ଅବସ୍ଥା ସାଧନ ।

ଗ୍ରହର୍କ୍ଷ ସଂଖ୍ୟା ଖଗମାନ ନିଘ୍ନୀ ଖେଟାଂଶ ସଂଖ୍ୟା ଗୁଣିତା ଗ୍ରହାଣାଂ ।
ନିକେଷ୍ଟ ଜନ୍ମର୍କ୍ଷ ତନୁପ୍ରମାଣୈର୍ନ୍ଦ୍ୟତାର୍କ ହୃତ୍ୱା ଶୟନାଦ୍ୟବସ୍ଥା ।୭୭।

ଗ୍ରହ ଯେଉଁ ନକ୍ଷତ୍ରରେ ଥିବ ସେହି ଅଙ୍କ ଖଗମାନ ବିଂଶ ଇତ୍ୟାଦି ଏମାନରେ ଗୁଣି ପୁଣି ଗ୍ରହର ଅଂଶରେ ଗୁଣିବ, ଜନ୍ମକାଳ ଇଷ୍ଟଦଣ୍ଡ ଜନ୍ମରୂକ୍ଷ ଓ ଲଗ୍ନ ଏମାନଙ୍କର ପ୍ରମାଣ ଅଙ୍କକୁ ମିଶାଇ ବାରରେ ହରିଲେ ଶେଷ ଯେ ସେ ଶୟନାଦି ଅବସ୍ଥା ହୁଅଇ । ୭୭ ।

## ଗ୍ରହ ଶୟନାଦ୍ୟବସ୍ଥା ।

ଶୟନଂ ଚୋପବେଶଂ ଚ ନେତ୍ରପାଣିପ୍ରକାଶନଂ ।
ଗମନାଗମନେ ବାଥ ସଭା ସବସତି ସ୍ତଥା । ୭୮ ।
ଆଗମୋ ଭୋଜନେ ଚୈବ ନୃତ୍ୟଲିପ୍ସା ଚ କୌତୁକଂ ।
ନିଦ୍ରା ଗ୍ରହାଣାଂ ଚେଷ୍ଟା ଚ କଥୟନ୍ତି ତଦାଗତଃ । ୭୯ ।

ଶୟନ, ଉପବେଶ, ନେତ୍ରପାଣି ପ୍ରକାଶ, ଗମନ, ଆଗମନ, ସଭା ଆଗମ, ଭୋଜନ, ନୃତ୍ୟଲିପ୍ସା, କୌତୁକ, ନିଦ୍ରା ଏହି ଦ୍ୱାଦଶାବସ୍ଥା ଗ୍ରହମାନଙ୍କର ହୁଅଇ । ୭୮ । ୭୯ ।

## ଅବସ୍ଥାଫଳ ।

ଶୟନାଦ୍ୟେଷୁ ଭାବେଷୁ ଯସ୍ୟ ତିଷ୍ଠନ୍ତି ସଦ୍‌ଗ୍ରହାଃ ।
ନିତ୍ୟଂ ତସ୍ୟ ଶୁଭଃ ଜ୍ଞାନଂ ନିବଂଶକଂ ଦ୍ୱିଜୋତ୍ତମ । ୮୦ ।

ଯାହାର ଜନ୍ମ ସମୟରେ ଶୁଭ ଗ୍ରହର ଶୟନାବସ୍ଥା ହେଲେ ଶୁଭ-ଫଳ ଦିଅନ୍ତି । ୮୦ ।

ଭୋଜନାଦ୍ୟେଷୁ ଭାବେଷୁ ପାପାସ୍ତିଷ୍ଠନ୍ତି ସର୍ବଥା ।
ତଦା ସର୍ବବିନାଶୋଽପି ନାତ୍ର କାର୍ଯ୍ୟା ବିଚାରଣା ।୮୧।

ଯାହାର ଜନ୍ମ ସମୟେ ପାପଗ୍ରହ ଭୋଜନାଦି ଅବସ୍ଥାରେ ଥାନ୍ତି ତେବେ ସର୍ବ ବିନାଶ ଫଳ ହୁଅଇ । ୮୧ ।

ନିଦ୍ରାୟାଂ ଚ ଯଦା ପାପୋ ଦାମ୍ପତ୍ୟସ୍ଥାନେ ଶୁଭଂ ଭବେତ୍ ।
ଯଦି ପାପଗ୍ରହୈର୍ଦୃଷ୍ଟୋ ନ ଶୁଭଂ ଚ କଦାଚନ । ୮୨ ।

ପାପଗ୍ରହ ନିଦ୍ରାବସ୍ଥାରେ ଓ ସପ୍ତମ ଭାବରେ ଥିବ ତେବେ ଶୁଭଫଳ ହେବ ଯଦି ପାପଗ୍ରହ ସେ ଗ୍ରହକୁ ଦେଖନ୍ତି ତାହାହେଲେ ଅଶୁଭଫଳ ଦିଅନ୍ତି । ୮ ।

ସୁତ ସ୍ଥାନେ ସ୍ଥିତଃ ପାପୋ ନିଦ୍ରାୟାଂ ଶୟନେଽପି ବା ।
ତଦା ଶୁଭଂ ଭବେତ୍ତସ୍ୟ ନାତ୍ର କାର୍ଯ୍ୟା ବିଚାରଣା । ୮୩ ।

ନିଦ୍ରା ବା ଶୟନାବସ୍ଥାରେ ପାପଗ୍ରହ ଥାଇ ପଞ୍ଚମ ଭାବରେ ଥାନ୍ତି ତେବେ ଶୁଭଫଳ ହୁଅଇ । ୮୩ ।

ମୃତ୍ୟୁ ସ୍ଥାନ ସ୍ଥିତଃ ପାପୋ ନିଦ୍ରାୟାଂ ଶୟନେଽପି ବା ।
ତଦା ତସ୍ୟାପ୍ୟମୃତ୍ୟୁଃ ସ୍ୟାଦ୍ରାଜତଃ ପରତସ୍ତଥା । ୮୪ ।

ନିଦ୍ରା ବା ଶୟନାବସ୍ଥା ପାପଗ୍ରହ ଥାଇ ଅଷ୍ଟମ ଭାବରେ ଥାନ୍ତି ତେବେ ରାଜା ଦ୍ୱାରା ବା ଶତ୍ରୁ ଦ୍ୱାରା ଅପମୃତ୍ୟୁ ଘଟେ । ୮୪ ।

କର୍ମସ୍ଥାନେ ଯଦା ପାପଃ ଶୟନେ ଭୋଜନେଽପି ବା ।
ତଦା କର୍ମ ବିକଳ୍ପଃ ସ୍ୟାନ୍ନାନାଦୁଃଖ ପ୍ରଦାୟକଃ । ୮୫ ।

ଶୟନ ବା ଭୋଜନାବସ୍ଥାରେ ପାପଗ୍ରହ ଥାଇ ଦଶମ ଭାବରେ ଥାନ୍ତି ତେବେ କର୍ମହୀନ ଓ ନାନାଦୁଃଖ ହୁଅଇ ।୮୫।

ଦଶମସ୍ଥୋ ନିଶାନାଥଃ କୌତୁକୀ ଚ ପ୍ରକାଶନେ ।
ତଦୈବ ରାଜଯୋଗଃ ସ୍ୟାନ୍ନିର୍ବିଶଙ୍କ୍ୟଂ ଦ୍ୱିଜୋତ୍ତମ ।୮୬।

ଚନ୍ଦ୍ର କୌତୁକ ପ୍ରକାଶାବସ୍ଥାରେ ଥାଇ ଦଶମ ଭାବରେ ଥାନ୍ତି ତେବେ ରାଜଯୋଗ ହୁଅଇ । ୮୬ ।

ବଳାବଳ ବିଚାରେଣ ଜାୟନ୍ତେ ଚ ଶୁଭାଶୁଭାଃ ।
ଏବଂ କ୍ରମେଣ ବୈ ଜ୍ଞେୟଂ ସର୍ବ ଭାବେଷୁ ବୁଦ୍ଧିମତ୍ ।୮୭।

ଗ୍ରହ ବଳ ଓ ଅବଳ ବିଚାରରେ ଶୁଭ ଓ ଅଶୁଭ ଫଳ ବିଚାର କରାଯିବ ଏହି କ୍ରମେ ସମସ୍ତ ଭାବରେ ବିଚାର କଲେ ଗ୍ରହଙ୍କର ଫଳ ନିର୍ଦ୍ଦେଶ ହେବ ।୮୬।

## କେଉଁ ଦଶା ନିର୍ଣ୍ଣୟ ।

ଇନଶଶି କୁଜ ରାହୁ ଜୀବ ମନ୍ଦଜ୍ଞକେତୁ-
ଭୃଗୁଜ ଇତି ନବାନାଂ କୃତ୍ତିକାଦି କ୍ରମେଣ । ୮୮ ।
ଷଟ୍‌ସୂର୍ଯ୍ୟ ଦଶଶ୍ଚନ୍ଦ୍ର ସପ୍ତପକ୍ଷ୍ୟୋ ଽଗ୍ନିପୂତଃ ।
ରାହୋରଷ୍ଟାଦଶଶ୍ଚୈବ ଗୁରେଜ୍ୟୋ ଷୋଡ଼ଶଃ ସ୍ମୃତଃ ।
ଶନେରେକୋନବିଂଶତ୍ୟା ବୁଧ ସପ୍ତଦଶଃ ସ୍ମୃତଃ । ୦ ।
କେତୁଶ୍ଚ ସପ୍ତବର୍ଷାଣି ଭୃଗୋ ବିଂଶତି ବତ୍ସରାଃ । ୮୯ ।

ରବିଦଶା ନ ୩।୧୨।୨୧ ନକ୍ଷତ୍ର ବ ୬ ବର୍ଷ । ଚନ୍ଦ୍ର ନ ୪।୧୩।୨୨ ବ ୧୦ ବର୍ଷ । ମଙ୍ଗଳ ନ ୫।୧୪।୨୩ ନକ୍ଷତ୍ର ବ ୭ ବର୍ଷ । ରାହୁ ନ ୬।୧୫।୨୪ ବ ୧୮ ବର୍ଷ । ବୃହସ୍ପତି ନ ୭।୧୬।୨୫ ନକ୍ଷତ୍ର ବ ୧୬ ବର୍ଷ । ଶନି ନ ୮।୧୭।୨୬ ବ ୧୯ ବର୍ଷ । ବୁଧ ନ ୯।୧୮।୨୭ ନକ୍ଷତ୍ର ବ ୧୭ ବର୍ଷ । କେତୁ ନ ୧୦।୧୯।୧ ବ ୭ ବର୍ଷ । ଶୁକ୍ର ନ ୧୧।୨୦।୨ ବ ୨୦ ବର୍ଷ । ଏହି ନକ୍ଷତ୍ରମାନଙ୍କରେ ଗ୍ରହମାନଙ୍କର ଦଶା ବାକି ଧରା ଯାଇ ଏହି ବର୍ତ୍ତମାନ ଦଶା ଭୋଗ କାଳ ହୁଅଇ । ୮୮ । ୮୯ ।

## ଦଶାବାକୀ ନିର୍ଣ୍ଣୟ ।

ଜନନୋଡୁ ଗତାଦ୍ୟସ୍ତୁ ଦଶାବର୍ଷେଣ ଗୁଣିତଂ ।
ଜନ୍ମର୍କ୍ଷ ସର୍ବନାଡ଼ିଭିର୍ବିହୃତା ଯତ୍ଫଳଂ ଲଭେତ୍ । ୯୦ ।
ତଦ୍ଦଶା ଗତବର୍ଷାଦି ଦଶା ବା ଶୋଧୟେଦତଃ ।
ଯଚ୍ଛେଷଂ ତଦ୍ଦଶାଦୀନାଂ ଶେଷ ବର୍ଷାଦିକଂ ଭବେତ୍ ।୯୧।

ଜନ୍ମ ସମୟେ ଯେଉଁ ନକ୍ଷତ୍ର ସେହି ଦଣ୍ଡ ଲିପ୍ତା ରଖି ତହିଁରୁ ଜନ୍ମ ଦଣ୍ଡ ଲିପ୍ତା ଫେଡ଼ିଲେ ହେଲା ଭୁକ୍ତଶେଷ । ଏହାକୁ ଦଶା ବର୍ଷରେ ଗୁଣି ରଖିବ । ଜନ୍ମ ସମୟ ନକ୍ଷତ୍ରକୁ ଭୁକ୍ତାଦ୍ୟନ୍ତ ଦଣ୍ଡ ଲିପ୍ତାକୁ ଲିପ୍ତ କରିଲେ ଏ ହେଲା ହରଣ, ଏ ହରଣେ ରଖିବା ଅଙ୍କକୁ ହରିଲେ ବର୍ଷ ମାସ ଓ ଦିନ ଦଣ୍ଡାଦି ପଡ଼ିବ । ନକ୍ଷତ୍ର ବାକି ଦଣ୍ଡକୁ ହରିଲେ

ଦଶା ବାକି ଯେବେ ନକ୍ଷତ୍ର ଭୋଗକୁ ହରିବ ତେବେ ଦଶାଭୋଗ କାଳ ଯିବଯାଏ । ଏହି ପ୍ରାୟ ଦଶା ବାକି ସାଧନ । ୧୦ । ୧୧ ।

## ଅନ୍ତର୍ଦ୍ଦଶା ନିର୍ଣ୍ଣୟ ।

ସ୍ୱଦଶା ବିଗୁଣଂ କୃତ୍ୱା ସ୍ୱଦଶାଘ୍ନଂ ହୃତଂ ପୁନଃ ।
ଖାଗ୍ନାପ୍ତେନ ତୁ ଯଂ ଲବ୍ଧଂ ଦଶା ସ୍ୟାନ୍ତର୍ଦ୍ଦଶା ଭବେତ୍ ।

ମହାଦଶା ବର୍ଷକୁ ଡଉନରେ ଗୁଣିବ ଯେଉଁ ଦଶାକୁ ଅନ୍ତର୍ଦ୍ଦଶା କରିବ ତାହାର ବର୍ଷକୁ ସେଥିରେ ଗୁଣି ତରଶିରେ ହରିଲେ ଲବ୍ଧ ବର୍ଷ ମାସ ଦିନ ଅନ୍ତର୍ଦ୍ଦଶା ହୁଅଇ । ୧୨ ।

## ପ୍ରତ୍ୟନ୍ତର୍ଦ୍ଦଶା ନିର୍ଣ୍ଣୟ ।

ଇଷ୍ଟମନ୍ତର୍ଦ୍ଦଶା ସଂଖ୍ୟା ତସ୍ୟୈବ ବର୍ଷୈର୍ହତଂ ପୁନଃ ।
ନରଭିର୍ଭବେତ୍ ଲବ୍ଧଂ ମନ୍ତ୍ରାନ୍ତର୍ଦ୍ଦଶା ବଦେତ୍ । ୧୩ ।

ଇଷ୍ଟ ଅନ୍ତର୍ଦ୍ଦଶା ବର୍ଷାଦିକୁ ଦିନ କରିବ ଯେଉଁ ଗ୍ରହକୁ ପ୍ରତ୍ୟନ୍ତର୍ଦ୍ଦଶା କରିବ ତାହାର ମୋଟ ବର୍ଷରେ ଗୁଣି ନର ଅଙ୍କ (୧୨୦) ରେ ହରିଲେ ଲବ୍ଧ ଦିନ ପଡ଼ଇ ଓ ବାକି ୬୦ ରେ ଗୁଣି ଉକ୍ତ ହରଣେ ହରିଲେ ଦଣ୍ଡ ପଡ଼ଇ ଏହାକୁ ମାସ ଦିନ ଓ ଦଣ୍ଡରେ ପରିଣତ କଲେ ପ୍ରତ୍ୟନ୍ତର୍ଦ୍ଦଶା ହୁଅଇ । ଏହି ପ୍ରାୟ ଅନ୍ତର୍ଦ୍ଦଶା ମଧ୍ୟରେ ପ୍ରତ୍ୟନ୍ତର୍ଦ୍ଦଶା ହୋଇ ଗ୍ରହମାନେ ଭୋଗ ହୁଅନ୍ତି । ୧୩ ।

## ନାକ୍ଷତ୍ରିକ ଦଶା ନିର୍ଣ୍ଣୟ ।

କୃତ୍ତିକାଦି ନୟେ ସୂର୍ଯ୍ୟଃ ଶଶୀ ରୌଦ୍ର ଚତୁଷ୍ଟୟେ ।
ମଘାଦି ହିତୟେ ଭୌମୋ ବୁଧୋ ହସ୍ତ ଚତୁଷ୍ଟୟେ । ୧୪ ।
ଅନୁରାଧା ନୟେ ଶୌରି ଗୁରୁଃ ପୂର୍ବ ଚତୁଷ୍ଟୟେ ।
ଧନିଷ୍ଠାଦି ନୟେ ରାହୁଃ ଶେଷେ ଶୁକ୍ରଃ ପ୍ରକୀର୍ତ୍ତିତଃ । ୧୫ ।

ରବି ନ ୩।୪।୫ କ୍ଷିବ ଚନ୍ଦ୍ର ନ ୬।୭।୮।୯ ମଙ୍ଗଳ ନ ୧୦।୧୧।୧୨ ବୁଧ ନ ୧୩।୧୪।୧୫।୧୬ । ଶନି ନ ୧୭।୧୮।୧୯ । ବୃହସ୍ପତି ନ ୨୦।୨୧।୨୨ ରାହୁ ନ ୨୩।୨୪।୨୫ । ଶୁକ୍ର ନ ୨୬।୨୭।୧ କ୍ଷିବ ଗ୍ରହମାନେ ଏ ନକ୍ଷତ୍ରରେ ଦଶାଧିପ ହୁଅନ୍ତି । ୧୪।୧୫ ।

## ଦଶାବର୍ଷ ।

ଷଟ୍‌ ସୂର୍ଯ୍ୟସ୍ୟ ଦଶା ପ୍ରୋକ୍ତାଃ ଶଶିନୋ ଦଶପଞ୍ଚ ଚ
ଅଷ୍ଟୌ ମଙ୍ଗାରକେ ପ୍ରୋକ୍ତା ବୁଧେ ସପ୍ତଦଶ ସ୍ମୃତାଃ ।୯୬
ଶନୈଶ୍ଚରେ ଦଶପ୍ରୋକ୍ତା ଗୁରୌ ଚୈକୋନବିଂଶତିଃ ।
ରାହୋ ଦ୍ୱାଦଶ ବର୍ଷାଣି ଭୃଗୋରପ୍ୟେକ ବିଂଶତିଃ ।୯୭-

ରବି ବ ୬ ର୍ଷ । ଚନ୍ଦ୍ର ବ ୧୫ ର୍ଷ । ମଙ୍ଗଳ ବ ୮ ର୍ଷ । ବୁଧ ବ ୧୭ ର୍ଷ । ଶନି ବ ୧୦ ର୍ଷ । ବୃହସ୍ପତି ବ ୧୯ ର୍ଷ । ରାହୁବ୧୨ର୍ଷ ଶୁକ୍ର ବ୨୧ର୍ଷ । ଏହି ବର୍ଷ ଅନୁକ୍ରମେ ଦଶା ଭୋଗକରନ୍ତି ।୯୬।୯୭।

## ଅନ୍ତର୍ଦ୍ଦଶା ସାଧନ ।

ସ୍ୱଦଶାଭିର୍ଦ୍ଦଶାଂ ହତ୍ୱା ନବଭିର୍ଭାଗମାହରେତ୍ ।
ଲବ୍ଧା ମାସାସ୍ତୁ ତଚ୍ଛେଷଂ ପୂରୟିତ୍ୱା ତୁ ତ୍ରିଂଶତା । ୯୮ ।
ଅଙ୍କେ ହୃତ୍ୱା ଦିନଂ ଗ୍ରାହ୍ୟଂ ତଚ୍ଛେଷେ ଷଷ୍ଟି ପୂରତେ ।
ନବଭିଶ୍ଚ ହୃତେ ଲବ୍ଧୋ ଜ୍ଞେୟୋଦଣ୍ଡସ୍ତଥୋତ୍ତରେ ।୯୯।

ଦଶା ବର୍ଷରେ ଅନ୍ତର୍ଦ୍ଦଶା ବର୍ଷକୁ ଗୁଣି ୯ଦ୍ୱାରା ହରଲେ ଲବ୍ଧା ମାସ ଓ ବାକିଥିବା ଅଙ୍କକୁ ୩୦ ରେ ଗୁଣି ୯ରେ ହରଲେ ଦିନ । ବାକି ଅଙ୍କକୁ ୬୦ ରେ ଗୁଣି ୯ ରେ ହରଲେ ଦଣ୍ଡ ଓ ପଳାଦି ଅନ୍ତର୍ଦ୍ଦଶା ହୁଅଇ ।୯୮।୯୯।

## ଯୋଗିନୀ ଦଶା ନିର୍ଣ୍ଣୟ ।

ମଙ୍ଗଳା ପିଙ୍ଗଳା ଧନ୍ୟା ଭ୍ରାମରୀ ଭଦ୍ରିକା ତଥା ।
ଉଲ୍କା ସିଦ୍ଧିଃ ସଂକଟା ଚ ଚୈଷ୍ଟା ଯୋଗ୍ନୀ ପ୍ରକୀର୍ତ୍ତିତା ।୧୦୦।

ମଙ୍ଗଳା ବ ୧ ର୍ଷ, ପିଙ୍ଗଳା ବ ୨ ର୍ଷ, ଧନ୍ୟା ବ ୩ ର୍ଷ, ଭ୍ରାମରୀ ବ ୪ ର୍ଷ, ଭଦ୍ରିକା ବ ୫ ର୍ଷ, ଉଲ୍କା ବ ୬ ର୍ଷ, ସିଦ୍ଧି ବ୭ର୍ଷ ସଂକଟା ବ ୮ ର୍ଷ, ଏହି ପ୍ରକାରରେ ଏହି ଦଶା ଭୋଗ କରନ୍ତି ।୧୦୦।

## ଯୋଗିନୀ ଦଶା କ୍ରମ ।

ସ୍ୱର୍ଷପିନାକଂ ନସ୍ୟୁନଂ ବସୁଭିର୍ଭାଗ ମାହରେତ୍ ।
ଶେଷଂ ଯୋଗ୍ନୀ ଦଶା ଜ୍ଞେୟା ଯାମଳେନ ପ୍ରକାଶିତା ।୧୦୧।

ଜନ୍ମ ନକ୍ଷତ୍ର ସହିତ ୩ ଯୁକ୍ତ କରି ୮ରେ ହରିଲେ ଶେଷ ଅଙ୍କରୁ ଯୋଗିନୀ ଦଶା ଜାଣିବ ଯଥା—୧କ ରହିଲେ ମଙ୍ଗଳା, ଦୁଇରେ ପିଙ୍ଗଳା ଇତ୍ୟାଦି ଏହା ରୁଦ୍ର ଯାମଳ ଗ୍ରନ୍ଥରେ ବିସ୍ତର ଭାବେ ବର୍ଣ୍ଣିତ ହୋଇଅଛି । ଯେଉଁ ଯୋଗିନୀ ଦଶା ହେବ ସେହି ଦଶା ହିସାବରେ ଜନ୍ମ ସମୟ ବାକି ଜାଣିବ । ୧୦୧ ।

## ଦଶା ଓ ଅନ୍ତର୍ଦ୍ଦଶା ଫଳଂ ।

### ରବିଦଶା ଫଳ ।

ରବିଦଶା ବ ୬ ୪ ।

ଦେଶାନ୍ତରେ ଚ ନିଜବନ୍ଧୁ ବିଯୋଗ ଦୁଃଖ
ମୁଦ୍‌ବେଗଚିତ୍ତ ଭୃଗୁବେଗ ମହାଭିଘାତଃ ।
ଦୃଷ୍ଟିସ୍ଥିତସ୍ୟ ନିଜଗେହ ଧନସ୍ୟ ନାଶୋ
ଭାନୋର୍ଦ୍ଦଶା ଗମନ କାଳ ଇମେ ଭବନ୍ତି ।୧୦୨।

ସ୍ୱୋଚ୍ଚସ୍ଥିତ ରବୌ ଚିତ୍ତ ଭୁକ୍ତେ ଶୋଭନ ମାଦିଶେତ୍ ।
ରାଜମାନନ ମର୍ଥାପ୍ତି ବନ୍ଧୁ ପୂଜ୍ୟଂ ଲଭେନ୍ନରଃ ।୧୦୩।
ଶୋଭନସ୍ୟାନ୍ତରେ ଭାନୋ ବନ୍ଧୂନାମୁପକାରକୃତ୍ ।
ଧନ ଲାଭଂ ତଥା ସୌଖ୍ୟଂ ପୁତ୍ରଚିତ୍ତଂ ସୁଖାବହଃ ।୧୦୪।

ସ୍ୱ ଅନ୍ତର୍ଦ୍ଦଶା ମା ୩।୧୮ ଦିନ ଫଳଂ ।

ଦେଶାନ୍ତର ନୃପାଦ୍‌ଭୀତଃ କୁକ୍ଷିରୋଗୋ ଧନକ୍ଷୟଃ ।
ସୁତଦୁଃଖଂ ଭୟଂ ଭାନୋ ରବ୍ୟନ୍ତର୍ଦ୍ଦଶା ଫଳଂ ।୧୦୫।

ଚନ୍ଦ୍ରାନ୍ତର୍ଦ୍ଦଶା ମା ୬ ସ ଫଳଂ ।

ସୁବର୍ଣ୍ଣାଭରଣଂ କାନ୍ତିଃ କାନ୍ତାନାଂ ଭୋଗମେବ ଚ ।
ସର୍ବେଷାଂ ପ୍ରିୟବାଦିତ୍ୱଂ ଭବେଦନ୍ତର୍ଗତେ ବିଧୌ ।୧୦୬।
ବସ୍ତ୍ରାଭରଣ ଲାଭଶ୍ଚ ଭୋଜନଂ ଭୋଗ ମେବ ଚ ।
ସର୍ବେଷାଂ ପ୍ରିୟବାଦୀ ଚ ରବେରନ୍ତର୍ଗତେ ବିଧୌ ।୧୦୭।

ମଙ୍ଗଳାନ୍ତର୍ଦ୍ଦଶା ମା ୪.୬ ଦିନ ଫଳଂ ।

ରାଜମାନନ ମର୍ଥାପ୍ତି ବନ୍ଧୁ ପୂଜା ମନୋରୁଚିଃ ।
ନାହିନାମ୍ବରଲାଭଂ ଚ ରବେରନ୍ତର୍ଗତେ କୁଜେ । ୧୦୮ ।